# ଭାରତ ଗୌରବ

( ସପ୍ତବିଂଶ ଖଣ୍ଡ )

ଲେଖକ :

ଶ୍ରୀ ଶୁକଦେବ ସାହୁ, ଏମ୍. ଏ.; ବି. ଇଡ୍.

ପ୍ରଧାନ ଶିକ୍ଷକ,

ରାମଚଣ୍ଡୀ ଶିକ୍ଷା ନିକେତନ, ଗୋଷ୍ଠୀ

ଜନଶକ୍ତି ପୁସ୍ତକାଳୟ

ପ୍ରକାଶକ :

ଏନ୍. ଏଲ୍. ଗୁପ୍ତା

**ଜନଶକ୍ତି ପୁସ୍ତକାଳୟ**

ବିନୋଦବିହାରୀ, କଟକ-୨

ପ୍ରଥମ ମୁଦ୍ରଣ :

କାଳୀପୂଜା-୧୯୮୫

**ମୂଲ୍ୟ ଟ . -୦୦**

ମୁଦ୍ରକ :

**ପ୍ରଜ୍ଞା ପ୍ରିଣ୍ଟର୍ସ**

ଝାଞ୍ଜନଗର, କଟକ-୨



# ଭ୍ରାତୃଭକ୍ତ ଲକ୍ଷ୍ମଣ

ପୂର୍ବ କାଳରେ ଦଶରଥ ମହାରାଜା ଅଯୋଧ୍ୟାରେ ରାଜତ୍ୱ କରୁଥିଲେ । ତାଙ୍କର ଅନେକ ରାଣୀ ଥିଲେ । ସେମାନଙ୍କ ମଧ୍ୟରୁ କୌଶଲ୍ୟା, କୈକେୟୀ ଓ ସୁମିତ୍ରାଙ୍କୁ ଦଶରଥ ବିଶେଷ ଭଲ ପାଉଥିଲେ; କିନ୍ତୁ କୌଣସି ରାଣୀଙ୍କ ଗର୍ଭରୁ ପୁଅଟିଏ ଜନ୍ମ ହୋଇ ନ ଥିବାରୁ ଦଶରଥ ମହାରାଜାଙ୍କ ମନରେ ସୁଖ ନ ଥିଲା । ପୁଅଟିଏ ପାଇବାକୁ ଦଶରଥ ସଦାସର୍ବଦା ଚିନ୍ତା କରୁଥିଲେ ।

ସେତେବେଳେ ଅଙ୍ଗ ଦେଶରେ ରାଜତ୍ୱ କରୁଥିଲେ ରୋମପାଦ । ତାଙ୍କ ରାଜ୍ୟରେ ବାରବର୍ଷ ଧରି ମେଘ ବରଷିଲା ନାହିଁ । ଜଳ ଅଭାବରୁ ଗୃହବାସ ହୋଇ ପାରିଲା ନାହିଁ । ଭୟଙ୍କର ଦୁର୍ଭିକ୍ଷ ପଡ଼ିଲା । ପ୍ରଜାମାନେ ବହୁତ କଷ୍ଟ ଭୋଗିଲେ । ରୋମପାଦ ରାଜା ଋଷିମୁନିମାନଙ୍କୁ ଡକେଇଲେ । କ'ଣ କଲେ ରାଜ୍ୟରେ ପର୍ଯ୍ୟାପ୍ତ ବର୍ଷା ହେବବୋଲି ପରାମର୍ଶ ମାଗିଲେ । ମୁନିଋଷିମାନେ ବହୁତ ବିଚାର ଆଲୋଚନା କରି କହିଲେ— ମହାରାଜ ! କୌଣସିମତେ ଋଷ୍ୟଶୃଙ୍ଗ ମହର୍ଷିଙ୍କୁ ଆଣିବାର ବ୍ୟବସ୍ଥା କରନ୍ତୁ । ସେ ବୃଷ୍ଟିଜଳ ବ୍ୟତୀତ ଅନ୍ୟଜଳ ପାନ କରନ୍ତି ନାହିଁ । ସେ ମହାଶୟ ଏଠାରେ ପାଦ ଦେବାମାତ୍ରେ ନିଶ୍ଚୟ ବୃଷ୍ଟି ହେବ ।

ତେବେ ମହର୍ଷି ଋଷ୍ୟଶୃଙ୍ଗ ଏଠାକୁ ଆସିବେ କିପରି ? ଆଜନ୍ମ ବ୍ରହ୍ମଚାରୀ ଋଷ୍ୟଶୃଙ୍ଗଙ୍କ ପାଖକୁ ଯିବାପାଇଁ ମୁନି-ଋଷିମାନେ ଭୟ କଲେ; ଆଉ କେହି ବି ତାଙ୍କ ପାଖକୁ ଯିବାପାଇଁ ସାହସ କଲେ ନାହିଁ । ଶେଷରେ ଦେଶବାସୀମାନଙ୍କୁ ଦୁର୍ଭିକ୍ଷ ବିପଦରୁ ରକ୍ଷା କରିବା ପାଇଁ ଅଙ୍ଗ ଦେଶର ଜଣେ ବେଶ୍ୟା ଆଗେଇ ଆସିଲା । ତାଙ୍କ ନାମ ଜରତା । ସେ ଋଷ୍ୟଶୃଙ୍ଗଙ୍କୁ ଅଙ୍ଗ ଦେଶରେ ପହଞ୍ଚାଇ ଦେବାକୁ ପଣକରି ବାହାରିଲା ।

ବିଭାଣ୍ଡକ ଋଷିଙ୍କ ପୁଅ ଋଷ୍ୟଶୃଙ୍ଗ । ବିଭାଣ୍ଡକ ଋଷି ପ୍ରତିଦିନ ଆଶ୍ରମ ଛାଡ଼ି ଘୋର ବଣରେ ତପସ୍ୟା କରିବାକୁ ଯାଆନ୍ତି । ଆଶ୍ରମରେ ଏକଲା ରହିଥାନ୍ତି ଋଷ୍ୟଶୃଙ୍ଗ ।

ଜରତା ତାର ସହଚରୀମାନଙ୍କ ସହିତ ବହୁ ପଥ ଅତିକ୍ରମ କରି ବିଭାଣ୍ଡକ ମୁନିଙ୍କ ଆଶ୍ରମରେ ପହଞ୍ଚିଲା । ଯୋଗକୁ ବିଭାଣ୍ଡକ

ତପସ୍ୟା କରିବାପାଇଁ ଦୂର ବଣକୁ ଯାଇଥିଲେ । ଜରତା ମଧୁର, ଲଳିତ ସ୍ୱରରେ ଗୀତ ଗାନକରି ଋଷ୍ୟଶୃଙ୍ଗ ଋଷିଙ୍କ ମନ ମୁଗ୍ଧ କରିଦେଲ । ନୃତ୍ୟଗୀତ ଛନ୍ଦରେ ଋଷିଙ୍କ ମନ ମୋହିତ କରି ଅଙ୍ଗ ଦେଶକୁ କୌଶଳକ୍ରମେ ନେଇଆସିଲ । ଋଷ୍ୟଶୃଙ୍ଗ ମହର୍ଷି ଅଙ୍ଗ ଦେଶରେ ପାଦଦେଲମାତ୍ରେ ପ୍ରବଳ ବୃଷ୍ଟି ହେଲ । ମରୁଡ଼ି ଜନିତ ଦୁର୍ଭିକ୍ଷ ଲୋପ ପାଇଲ । ଲୋକମାନେ ଋଷ୍ୟଶୃଙ୍ଗ ମହର୍ଷିଙ୍କ ମହିମା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । କିଛିଦିନ ପରେ ଋଷ୍ୟଶୃଙ୍ଗ ଲୋମପାଦ ରାଜାଙ୍କ ଝିଅ ଶାନ୍ତାଙ୍କୁ ବିବାହ କରି ଆନନ୍ଦରେ କାଳ କାଟିଲେ ।

ଦିନେ ଦଶରଥ କୁଳଗୁରୁ ବଶିଷ୍ଠଙ୍କ ଆଶ୍ରମକୁ ଯାଇଥିଲେ । ମନର ଦୁଃଖ କଥା ତାଙ୍କ ଆଗରେ କହିଲେ । ବଶିଷ୍ଠ ଟିକଏ ଚିନ୍ତାକରି କହିଲେ—ବତ୍ସ ଦଶରଥ, ତମେ ଅଙ୍ଗ ଦେଶକୁ ଯାଅ । ଋଷ୍ୟଶୃଙ୍ଗ ମହର୍ଷିଙ୍କୁ ଅଯୋଧ୍ୟା ନେଇଆସ । ସେ ପୁରୋଧା ହୋଇ ଯଜ୍ଞ କଲେ ନିଶ୍ଚୟ ପୁତ୍ରଲାଭ କରିବ ।

ପରଦିନ ଦଶରଥ ରଥ ଚଢ଼ି ଅଙ୍ଗ ଦେଶ ଗଲେ । ଋଷ୍ୟଶୃଙ୍ଗ ଋଷିଙ୍କ ନିକଟରେ ବିନମ୍ର ହୋଇ ନିଜର ମନକଥା ଜଣାଇଲେ । ଋଷ୍ୟଶୃଙ୍ଗ ପୁରୋଧା ହୋଇ ଯଜ୍ଞ କରିବାକୁ ଅଯୋଧ୍ୟା ଆସିଲେ । ଯଥାସମୟରେ ସରଯୂ ନଈ କୂଳରେ ଅଥର୍ବ ବେଦୋକ୍ତ ପୁତ୍ରେଷ୍ଟି ଯଜ୍ଞ କଲେ । ସେହି ଯଜ୍ଞର ଚରୁ ପ୍ରଭାବରେ କୌଶଲ୍ୟାଙ୍କ ଗର୍ଭରୁ ରାମ ଓ କୈକେୟୀଙ୍କ ଗର୍ଭରୁ ଭରତ ଜନ୍ମ ହୋଇ-ଥିଲେ । ସେହି ଚରୁ ପ୍ରଭାବରେ ସୁମିତ୍ରା ଦୁଇପୁଅ ଜନ୍ମ କରିଥିଲେ । ସୁମିତ୍ରାଙ୍କ ବଡ଼ ପୁଅର ନାମ ଲକ୍ଷ୍ମଣ ଓ ସାନ-ପୁଅର ନାମ ଶତ୍ରୁଘ୍ନ ।

ଲକ୍ଷ୍ମଣ ନିଜ ଭାଇ ଶତ୍ରୁଘ୍ନ ଅପେକ୍ଷା ରାମଚନ୍ଦ୍ରଙ୍କୁ ଭାରି ଭଲ ପାଉଥିଲେ । ସଦାସର୍ବଦା ତାଙ୍କର ଆଦେଶ ମାନି କାମ କରୁଥିଲେ ।

ଦଶରଥ ମହାରାଜା ବୁଢ଼ାଦିନେ ଚାରୋଟି ପୁଅ ପାଇ ମନ ଆନନ୍ଦରେ ଦିନ କାଟୁଥିଲେ । ପୁଅମାନଙ୍କୁ ଭାରି ସ୍ନେହ କରୁଥିଲେ । ଘଡ଼ିକପାଇଁ ପାଖରୁ ଅନ୍ତର କରୁ ନ ଥିଲେ ।

ରାମ, ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନ ବଡ଼ହୋଇ ପାଠଶାଠ ପଢ଼ିଲେ । ଯୁଦ୍ଧବିଦ୍ୟା ଶିଖିଲେ । ତାଙ୍କର ବଳବିକ୍ରମ ଦେଖି ଲୋକମାନେ ଆଶ୍ଚର୍ଯ୍ୟ ହୋଇଯାଉଥିଲେ । ମନେମନେ ଭାବୁଥିଲେ, ଏହି ଚାରିଭାଇ ବଡ଼ ହେଲେ ଅଯୋଧ୍ୟା ରାଜ୍ୟର ଟେକ ବଢ଼ାଇବେ । ଦଶରଥ ଲୋକମୁଖରୁ ପୁଅମାନଙ୍କ ପ୍ରଶଂସା ଶୁଣି ଭାରି ଖୁସି ହେଉଥିଲେ ।

ଦିନେ ଦଶରଥଙ୍କ ରାଜସଭାରେ ବିଶ୍ୱାମିତ୍ର ଋଷି ପହଞ୍ଚିଲେ । ଦଶରଥ ଆଦର ଅଭ୍ୟର୍ଥନା ଜଣାଇ ବିଶ୍ୱାମିତ୍ରଙ୍କୁ ଆସିବାର କାରଣ ପଚାରିଲେ ।

ବିଶ୍ୱାମିତ୍ର କହିଲେ, ମହାରାଜ ! ସିଦ୍ଧବନରେ ମୁଁ ଗୋଟିଏ ଯଜ୍ଞ ଆରମ୍ଭ କରିଛି; କିନ୍ତୁ ରାକ୍ଷସମାନେ ମୋ ଯଜ୍ଞରେ ବିଘ୍ନ ଘଟାଉଛନ୍ତି । ଦୟାକରି ମୋ ସାଙ୍ଗରେ ରାମ ଲକ୍ଷ୍ମଣଙ୍କୁ ପଠାନ୍ତୁ । ରାକ୍ଷସଙ୍କ ହାତରୁ ଦୁଇଭାଇ ମୋ ଯଜ୍ଞ ରକ୍ଷା କରିବେ ।

ଦଶରଥଙ୍କ ହାଲୁକ ଶୁଖିଗଲା । ସେ ରାମ, ଲକ୍ଷ୍ମଣଙ୍କୁ ବେଶି ଭଲ ପାଉଥିଲେ । ତାଙ୍କୁ ପାଖରୁ ଅନ୍ତର କରିବାକୁ ଚାହୁଁ

ନ ଥିଲେ ! ବିଶ୍ୱାମିତ୍ରଙ୍କ କଥା ଶୁଣି ଦଶରଥ କହିଲେ—ମହର୍ଷି, ରାମ ଲକ୍ଷ୍ମଣ, ସାନପିଲା । ମାୟାବୀ ରାକ୍ଷସଙ୍କ ସହିତ ସେମାନେ ଯୁଦ୍ଧ କରିବାକୁ ସକ୍ଷମ ହୋଇନାହାନ୍ତି । ତାଙ୍କୁ ସାଙ୍ଗରେ ନେଲେ କି ଲାଭ ପାଇବେ ? ବରଂ ଆପଣଙ୍କ ଯଜ୍ଞ ରକ୍ଷା କରିବାକୁ ମୁଁ ନିଜେ ଯିବି । ସୈନ୍ୟସାମନ୍ତ ନେଇ ଆପଣଙ୍କ ଯଜ୍ଞ ରକ୍ଷାକରିବି । ଶର ଜାଲରେ ଦଶଦିଗ ରୁଦ୍ଧ କରିଦେବି । କୌଣସି ରାକ୍ଷସ ଆପଣଙ୍କ ଯଜ୍ଞ ଭଗ୍ନ କରିବାକୁ ସାହସ କରିବ ନାହିଁ । ଯଦି କେହି ଆସେ ତାହାହେଲେ ତାର ମୁଣ୍ଡ କାଟି ପକାଇବି ।

ବିଶ୍ୱାମିତ୍ର କହିଲେ—ମହାରାଜ ! ରାମ, ଲକ୍ଷ୍ମଣ ସାନ ସତ, କିନ୍ତୁ ସାମାନ୍ୟ ନୁହନ୍ତି । ତାଙ୍କ ସାନସାନ ବାହୁରେ ବହୁତ ବଳ ଅଛି । ସାନସାନ ଛାତି ତଳେ ଅସୀମ ସାହସ ରହିଛି । ରାମ ଲକ୍ଷ୍ମଣଙ୍କର ଶକ୍ତି କେତେ ସେକଥା ମତେ ବେଶ ଭଲ-ଭାବରେ ଜଣା । ମୁଁ ସେଇ ଦୁଇଭାଇଙ୍କୁ ସାଙ୍ଗରେ ନେବାକୁ ଚାହେଁ । ସୈନ୍ୟସାମନ୍ତ ନେଇ ବୃଦ୍ଧ ବୟସରେ ଯୁଦ୍ଧଯାତ୍ରା କରିବା ତମପକ୍ଷେ ସୁବିଧା କଥା ନୁହେଁ । ରାମ ଲକ୍ଷ୍ମଣଙ୍କୁ ମତେ ଜିମା କର । ସାନ ହେଲେ ବି ଦୁଇଭାଇଯାକ ବଡ଼ବଡ଼ ରାକ୍ଷସଙ୍କୁ ମାରି ଚଦା କରିଦେବେ ।

ଦଶରଥ ବଡ଼ ଚିନ୍ତାରେ ପଡ଼ିଲେ । କ'ଣ କହିବେ, କ'ଣ କରିବେ, କିଛି ସ୍ଥିରକରି ପାରିଲେ ନାହିଁ । ରାଜାଙ୍କ ମନକଥା ଅନୁଭବ କରି ବଶିଷ୍ଠ କହିଲେ—ବତ୍ସ ଦଶରଥ ! ମନ ଊଣା କରୁଛ କାହିଁକି ? ବିଶ୍ୱାମିତ୍ରଙ୍କ ସହ ରାମ, ଲକ୍ଷ୍ମଣଙ୍କୁ ପଠାଇ-ଦିଅ । ଦଶରଥ କୁଳଗୁରୁ ବଶିଷ୍ଠଙ୍କ କଥାମାନି ରାମ ଲକ୍ଷ୍ମଣଙ୍କୁ ଡକେଇ ଆଣିଲେ ଓ ବିଶ୍ୱାମିତ୍ରଙ୍କ ଜିମା କରିଦେଲେ ।

ବିଶ୍ୱାମିତ୍ର ରାମ ଲକ୍ଷ୍ମଣଙ୍କୁ ସାଙ୍ଗରେ ନେଇ ସିଦ୍ଧବନକୁ ଚାଲିଲେ । ବହୁପଥ ଅତିକ୍ରମ କଲାପରେ ଘୋର ଜଙ୍ଗଲଟିଏ ପଡ଼ିଲା । ସେହି ଜଙ୍ଗଲର ତିନିଛକ ରାସ୍ତା ଉପରେ ଛିଡ଼ା ହୋଇ ବିଶ୍ୱାମିତ୍ର କହିଲେ—ବତ୍ସ ରାମଚନ୍ଦ୍ର ! ଏଇଠୁ ତିନୋଟି ରାସ୍ତା ତିନିଆଡ଼କୁ ପଡ଼ିଛି । ପ୍ରଥମ ରାସ୍ତାଟି ପଡ଼ିଛି ମିଥିଳାକୁ । ଦ୍ୱିତୀୟ ରାସ୍ତାରେ ଗଲେ ବହୁ ବୁଲିଣି ବାଟଦେଇ ଆମେ ସିଦ୍ଧବନରେ ପହଞ୍ଚିବା । ତୃତୀୟ ରାସ୍ତାରେ ଗଲେ ଆମେ ଅଳ୍ପ ସମୟ ଭିତରେ ସିଧାସଳଖ ସିଦ୍ଧବନରେ ହାଜର ହୋଇଯିବା ; କିନ୍ତୁ ଏଇ ତୃତୀୟ ରାସ୍ତାରେ ଗଲେ ଗୋଟାଏ ବଡ଼ ବିପଦର ଆଶଙ୍କା ରହିଛି ।

ରାମଚନ୍ଦ୍ର ପଚାରିଲେ—ମହର୍ଷି, ବିପଦର କାରଣଟି କ'ଣ ? ଦୟାକରି ପ୍ରକାଶ କରନ୍ତୁ ।

ବିଶ୍ୱାମିତ୍ର ଟିକେ ମୁହଁ ଶୁଖାଇ କହିଲେ—ବତ୍ସ ରାମଚନ୍ଦ୍ର ! ଏହି ତୃତୀୟ ରାସ୍ତାରେ ଗଲେ ତାଟକା ରାକ୍ଷସୀ ଘର ପଡ଼ିବ । ବାପ୍ରେ, ସେ ତାଟକା ନାଁ ଶୁଣିଲେ ଦେବତାମାନେ ଭୟ କରନ୍ତି । ଅସୁରୁଣୀଟାର ବଳ ବହୁତ । ଶହେଟା ହାତୀର ବଳଠାରୁ ବେଶିହେବ । ତା ରଡ଼ି ଶୁଣିଲେ ବାଘ ଭାଲୁ କାଠ ହୋଇଯାଆନ୍ତି । ଗଛ ଲତା ଥରି ଉଠନ୍ତି । ପାହାଡ଼ ଝରଣାର ଗତି ବନ୍ଦ-ହୋଇଯାଏ ।

ବୁଝିଲ ରାମଚନ୍ଦ୍ର, ଅସୁରୁଣୀଟା ଦେଖିବାକୁ ଖଣ୍ଡିଆ ପାହାଡ଼ ପରି । ଆଷାଢ଼ ମାସିଆ ଦକ୍ଷିଣା ବଉଦଠାରୁ ଆହୁରି ଗାଢ଼ କଳା । ପବନଠାରୁ ଆହୁରି ଜୋର୍‌ରେ ସେ ଦଉଡ଼ିପାରେ ।

ତା ହାବୁଡ଼ରେ ପଡ଼ିଲେ ଉଦ୍ଧାରିବା କଷ୍ଟ । ଟିକିଏ ଇଶାରା ପାଇଲେ ଆମ ଉପରେ ଆକ୍ରମଣ ଆରମ୍ଭ କରିଦେବ । କ'ଣ କରିବା କହିଲ ?

ରାମଚନ୍ଦ୍ର ବିଶ୍ୱାମିତ୍ରଙ୍କ କଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । ସାମାନ୍ୟ ଅସୁରୁଣୀଟାକୁ ଭୟକରି ଲୁଲଣି ରାସ୍ତାରେ ଯିବାକୁ ଭଲ ମନେକରୁ ନ ଥିଲେ । ଅସୁରୁଣୀର ବଳ ବିକ୍ରମ କଥାଶୁଣି ଲକ୍ଷ୍ମଣଙ୍କ ରାଗ ବଢ଼ିଯାଇଥିଲା । କହିଲେ— ମହର୍ଷି ! ଏହି ଅଳ୍ପ ଦୂର ବାଟେ ଆମେ ଯିବା । ଦେଖିବା ତାଟକାର ବଳ କେତେ ? ଯଦି ସେ ଆମ ଆଗକୁ ଆସେ, ଆଗେ ତାକୁ ଖତମ କରିବାକୁ ପଡ଼ିବ ।

ବିଶ୍ୱାମିତ୍ର ଅଳ୍ପଟିକେ ହସିଦେଇ କହିଲେ—ସାବାସ୍ ଲକ୍ଷ୍ମଣ, ସାବାସ୍ ! ବୀର ସନ୍ତାନମାନେ କାହାରିକୁ ଡରନ୍ତି ନାହିଁ । ଡରିବା ଲୋକ ଜୀବନରେ କିଛି କରିପାରେ ନାହିଁ । ସାହସୀ ଲୋକ ନିଜର ବୁଦ୍ଧିବଳରେ ଅସାଧ୍ୟ ସାଧନ କରି ଜୟଯୁକ୍ତ ହୁଏ । ଲକ୍ଷ୍ମଣ ! ତମର ଏଇ ସାହସ ତୁମକୁ ସବୁ କ୍ଷେତ୍ରରେ ବଳ-ଦେବ । ଅସାଧ୍ୟ ସାଧନ କରି ଜନସମାଜରେ ପ୍ରଶଂସା ଲାଭ କରିବ । ଭୟ ବର୍ଜନ ହେଉଛି ବୀର ଧର୍ମର ସାର କଥା ।

ଲକ୍ଷ୍ମଣ ବିନମ୍ର କଣ୍ଠରେ କହିଲେ—ଋଷିବର ! ଅଯୋଧ୍ୟା ରାଜବଂଶର ରାଜାମାନେ କୌଣସି କ୍ଷେତ୍ରରେ ଭୟକରି ପଛେଇ ଯାଆନ୍ତି ନାହିଁ । ଆପଣଙ୍କ ପରି ମହର୍ଷିଙ୍କ ଆଶୀର୍ବାଦ ଲାଭକରି ଥିବାରୁ ସାମାନ୍ୟ ତାଟକାସୁରୀକୁ ଆମର ଡରିଲେହେଲେ ଭୟ

ନାହିଁ । ଏହାକହି ଲକ୍ଷ୍ମଣ ତାଡ଼କାସୁର ରହୁଥିବା ବଣ ବାଟରେ ଆଗେଇ ଚାଲିଲେ ।

ତାଡ଼କାସୁରୀ ରାମ, ଲକ୍ଷ୍ମଣ ଓ ବିଶ୍ୱାମିତ୍ରଙ୍କ ପାଦଶବ୍ଦ ଶୁଣି ଭୟଙ୍କର ଗର୍ଜନ କଲା । ମଣିଷ ମାଂସ ଖାଇବାକୁ ମନେ-ମନେ ଖୁସି ହୋଇ ଛୁଟିଆସିଲା । ଗଛ ଉପାଡ଼ିରେ ଛକରହି ଧୂଳି ଝଡ଼ ସୃଷ୍ଟି କଲା । ବଡ଼ବଡ଼ ଡାଳଗୁଡ଼ିକ ରାମ ଲକ୍ଷ୍ମଣ ଓ ବିଶ୍ୱାମିତ୍ରଙ୍କ ଉପରକୁ ଫୋପାଡ଼ିଲା । ଟେକାପଥର ବୃଷ୍ଟି କଲା । ରେରେକାର ରଡ଼ ଗୁଡ଼ ମାଡ଼ିଆସିଲା ।

ଲକ୍ଷ୍ମଣ ଧନୁରେ ଶର ବସାଇ ପ୍ରସ୍ତୁତ ହୋଇଗଲେ । କହିଲେ ଭାଇ, ଆଗେ ଏ ଅସୁରୁଣୀକୁ ଖତମ କରିବା । ଏଇଟା ମୁନିଋଷିଙ୍କୁ କଷ୍ଟ ଦେଉଛି । ଯାଗଯଜ୍ଞ ନଷ୍ଟ କରୁଛି । ଅଯଥାରେ ଆକ୍ରମଣ କରି ମୁନିଋଷିଙ୍କୁ ଗୋଟାପଣେ ଗିଳି ଦେଉଛି । ଏଟାକୁ ନାରୀ ବୋଲି ଦୟା କରୁଛ କି ? ସେ ବିଚାର ଏଠି ଚଳିବ ନାହିଁ । ଦୁଷ୍ଟ ଅତ୍ୟାଚାରୀ ଲୋକକୁ ବଧ କଲେ କିଛି ଦୋଷ ନାହିଁ । ଶୀଘ୍ର କୋଦଣ୍ଡ ଧନୁ ଧର । ତାଡ଼କାକୁ ମାରି ଏ ବଣର ଅଶାନ୍ତି ଦୂର କରିବା ।

ରାମଚନ୍ଦ୍ର ମୁନିଆ ଶରମାରି ତାଡ଼କାର ଡାହାଣ ହାତ କାଟିଦେଲେ । ଲକ୍ଷ୍ମଣ ଆଉ ଗୋଟିଏ ଶରବିନ୍ଧି ତାଡ଼କାର ବାଁ ହାତ କାଟିଦେଲେ । ଦି'ହାତ କଟିଗଲେ ବି ତାଡ଼କା ହଟିଲା ନାହିଁ । ବିଶ୍ୱାମିତ୍ରଙ୍କୁ ଗିଳିଦେବା ପାଇଁ ଛୁଟିଆସିଲା । ରାମ ଲକ୍ଷ୍ମଣ ଏକ ସମୟରେ ଦୁଇଟି ତୀକ୍ଷ୍ଣ ଶର ଛାଡ଼ିଦେଲେ ।

ଶର ଦୂଇଟି ତାଡ଼କାର ଗ୍ରୀବାରେ ଫୁଟିଗଲା । ଭୟଙ୍କର ଗର୍ଜନ ଗୁଡ଼ ତାଡ଼କାସୁରୀ ମରିଗଲା ।

ବିଶ୍ୱାମିତ୍ର ଅତିଶୟ ଖୁସି ହେଲେ । ରାମ ଲକ୍ଷ୍ମଣଙ୍କୁ ପ୍ରଶଂସା କଲେ । ତା'ପରେ ସିଦ୍ଧ ବନରେ ପଦାର୍ପଣ୍ଡି ଯାଗ ଆରମ୍ଭ କଲେ ।

ତାଡ଼କାସୁରୀର ଦ'ପୁଅ । ମାରୀଚ ଓ ସୁବାହୁ । ତାଡ଼କା ମଲାବେଳେ ମାରୀଚ ଓ ସୁବାହୁ ଦୂର ବଣକୁ ଯାଇଥିଲେ । ବଣରୁ ଫେରି ଦେଖିଲେ ମା' ତାଡ଼କା ମରି ପଡ଼ିଛି । ଦ'ଭାଇଯାକ ଆଶ୍ଚର୍ଯ୍ୟ ହୋଇଗଲେ । ମୋଟ୍ର ତାଡ଼କା ନାଁ ଶୁଣିଲେ ସ୍ୱର୍ଗର ଦେବତା ଥରହର ହୁଅନ୍ତି ତାକୁ ମାରିଲା କିଏ ? ଦ'ଭାଇଯାକ ବହୁତ ଚିନ୍ତାକଲେ । କିନ୍ତୁ କୂଳକିନାରା ପାଇଲେ ନାହିଁ ।

ଚାରିଆଡ଼କୁ ନଜର କରି ଦେଖିଲେ ସିଦ୍ଧବନରୁ ବହଳିଆ ଧୂଆଁ ଉଠୁଛି । ଧୂଆଁ ବାସନା ବାରି ଜାଣିପାରିଲେ ସେଠି ଯଜ୍ଞ ଆରମ୍ଭ ହୋଇଛି । ମାରୀଚ ଓ ସୁବାହୁ ଘୋର ଗର୍ଜନ କରି ସିଦ୍ଧବନକୁ ଦଉଡ଼ିଲେ । ଗଛ ଗହଳରେ ଲୁଚିରହି ଦେଖିଲେ—ବିଶ୍ୱାମିତ୍ର ମହର୍ଷି ଆଖିବୁଜି ଧ୍ୟାନରେ ବସିଛନ୍ତି । ଅନ୍ୟାନ୍ୟ ଋଷିମାନେ ମନ୍ତ୍ରପଢ଼ି ଯଜ୍ଞରେ ଆହୁତି ଦେଉଛନ୍ତି । ଯଜ୍ଞ ମଣ୍ଡପ ପାଖରେ ଦୁଇଜଣ ତେଜସ୍ୱୀନ୍ ଯୁବକ ଧନୁଧରି ଛିଡ଼ା-ହୋଇଛନ୍ତି ।

ସୁବାହୁ କହିଲା, ଭାଇ ଏଇ ଯୁବକ ଦ'ଜଣ ଋଷିଙ୍କ ଯଜ୍ଞରକ୍ଷା କରିବାକୁ ଆସିଛନ୍ତି । ବିଶ୍ୱାମିତ୍ର କୋଉ ରାଜ୍ୟରୁ ଏ ଦୁଇଜଣଙ୍କୁ ଆଣିଛନ୍ତି । ଏଇ ଦୁଇଜଣ ବୋଧହୁଏ ଶରମାରି ଆମ ମା'କୁ

ମାରି ଦେଇଛନ୍ତି । ମାରୀଚ କହିଲା, ସୁବାହୁ ତୋ ଅନୁମାନ ଭୁଲ ନୁହେଁ । ଏ ଦୁଇଜଣଙ୍କୁ ମାରି ମାତୃହତ୍ୟାର ପ୍ରତିଶୋଧ ନେବା । ମୁଁ ଆକାଶମାର୍ଗରେ ରହି ପଥର ବୃଷ୍ଟି କରିବି । ତୁ ଯଜ୍ଞ ନଷ୍ଟ କରିବା ପାଇଁ ଯୋଗାଡ଼ କର । ଆଗେ ଯଜ୍ଞ ନଷ୍ଟ କରିବା । ତା'ପରେ ପଥରରେ ଛେଚି ଯୁବକ ଦି'ଟାଙ୍କୁ ମାରିଦେବା ।

ଏହିପରି ପାଞ୍ଚକରି ମାରୀଚ ଅସୁମାରି ଟେକା ପଥର-ନେଇ ଆକାଶକୁ ଉଠିଗଲା । ଯଜ୍ଞମଣ୍ଡପ ଉପରେ ପଥର ବୃଷ୍ଟି କଲା । ସୁବାହୁ ବଣଜୀବଙ୍କୁ ମାରି ଯଜ୍ଞମଣ୍ଡପ ଉପରେ ରକ୍ତ ବୃଷ୍ଟି କଲା । ଋଷିମାନେ ବିଚଳିତ ହୋଇ ପଡ଼ିଲେ । ରାମ, ଲକ୍ଷ୍ମଣ ରକ୍ଷାକର ବୋଲି ଚିତ୍କାର କଲେ ।

ଲକ୍ଷ୍ମଣ ଶରଜାଲରେ ଆକାଶ ପଥ ଛାଇଦେଲେ । ରକ୍ତ ଛିଟା ଆଉ ଯଜ୍ଞ ମଣ୍ଡପରେ ପଡ଼ିପାରିଲା ନାହିଁ । ମାରୀଚର ଟେକା ପଥର ଆଉ ତଳେ ପଡ଼ିଲା ନାହିଁ ।

ମାରୀଚ ଆଉ ସୁବାହୁ ରାଗିଯାଇ ଭୟଙ୍କର ଗର୍ଜନ କଲେ । ରାମ, ଲକ୍ଷ୍ମଣଙ୍କୁ ଆକ୍ରମଣ କରିବାକୁ ଛୁଟି ଆସିଲେ । ରାମଚନ୍ଦ୍ର ଲକ୍ଷ୍ୟଶର ସନ୍ଧାନ କରି ମାରୀଚକୁ ଘାଇଲ କରିଦେଲେ । ମାରୀଚ ରାଗିଯାଇ ବଡ଼ବଡ଼ ପଥର ଖଣ୍ଡ ଆଣି ରାମଚନ୍ଦ୍ରଙ୍କ ସହିତ ଯୁଦ୍ଧକଲା; କିନ୍ତୁ ରାମଚନ୍ଦ୍ରଙ୍କ ବାଣ ଆଘାତରେ ସମ୍ଭାଳି ହୋଇ ରହିପାରିଲା ନାହିଁ । କେତେ ଯୋଜନ ଉଡ଼ିଯାଇ ସମୁଦ୍ରରେ ବୁଡ଼ିଗଲା । କଷ୍ଟେମଷ୍ଟେ ପହଁରାପହଁରି କରି କୂଳରେ ଲାଗିଲା । ରାମ ଲକ୍ଷ୍ମଣଙ୍କ ପାଖକୁ ଯିବାପାଇଁ ଆଉ ତାର ସାହସ

କୁଟିକେଇଲା ନାହିଁ । ପ୍ରାଣ ଭୟରେ ଡିଆଁ ମାରି ଦୂର ବଣଭିତରେ ଲୁଚି ରହିଲା ।

ସୁବାହୁ ମାରୀଚର ପରାଭବ ଦେଖି ଭୟଙ୍କର ରାଗିଗଲା । ଘୋର ଝାଣରେ ରାମ ଲକ୍ଷ୍ମଣଙ୍କ ସହିତ ଯୁଦ୍ଧକଲା । ଲକ୍ଷ୍ମଣ ତୀକ୍ଷ୍ଣ ଶରମାରି ସୁବାହୁର ଗୁଡ଼ିଏ ମୁଣ୍ଡ ଫୁଟାଇ ଦେଲେ । ସୁବାହୁର ଦେହରୁ ଧରଧାର ହୋଇ ରକ୍ତ ଛୁଟିଲା । ରାମଚନ୍ଦ୍ର ଆଉ ଗୋଟିଏ ଶରମାରି ସୁବାହୁ ରାକ୍ଷସକୁ ମାରିଦେଲେ ।

ମୁନି ଋଷିମାନେ ରାମ ଲକ୍ଷ୍ମଣଙ୍କ ବୀରତ୍ୱ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ମନେମନେ ଦୁଇଭାଇଙ୍କୁ ଭାରି ପ୍ରଶଂସା କଲେ । ଯଥାବିଧିରେ ଯଜ୍ଞକାର୍ଯ୍ୟ ଚାଲିଲା । ବିଶ୍ୱାମିତ୍ର ଯଜ୍ଞରେ ପୂର୍ଣ୍ଣାହୁତି ଦେଇ ସିଦ୍ଧିଲାଭ କଲେ ।

ପରଦିନ ବିଶ୍ୱାମିତ୍ର ଋଷିମାନଙ୍କ ଗହଣରେ ମିଥିଳା ଯାତ୍ରା କଲେ । ରାମ ଲକ୍ଷ୍ମଣ ଶିବଧନୁ ଦେଖିବା ପାଇଁ ବିଶ୍ୱାମିତ୍ରଙ୍କ ସହିତ ଗଲେ । ବାଟରେ ଗୌତମ ଋଷିଙ୍କ ଆଶ୍ରମ ପଡ଼ିଲା । ଗୌତମ-ଋଷିଙ୍କ ଅଭିଶାପରେ ତାଙ୍କ ସ୍ତ୍ରୀ ଅହଲ୍ୟା ପଥର ହୋଇ ପଡ଼ିଥିଲେ । ରାମଚନ୍ଦ୍ରଙ୍କ ପାଦଧୂଳି ତାଙ୍କ ଦେହରେ ପଡ଼ିବାରୁ ସେ ସ୍ୱାମୀଙ୍କ ଅଭିଶାପରୁ ମୁକ୍ତିଲାଭ କଲେ । ଦିବ୍ୟରୂପ ଧରି ସେ ସ୍ୱାମୀଙ୍କୁ ଦେଖା କରିବାକୁ ହିମାଳୟ ଚାଲିଗଲେ ।

ଗୌତମଋଷିଙ୍କ ଆଶ୍ରମରୁ ବହିବାଟ ଚାଲି ରାମଚନ୍ଦ୍ର ଲକ୍ଷ୍ମଣ ଓ ବିଶ୍ୱାମିତ୍ର ଆଦି ଋଷିମାନେ ଗଙ୍ଗାନଦୀ କୂଳରେ ପହଞ୍ଚିଲେ । ଗଙ୍ଗାନଦୀରେ ସାତ ଡାଳ ପାଣି । ବଡ଼ବଡ଼ ଢେଉ ଉଠୁଥିଲା । ଡଙ୍ଗାଟି ଥିଲା ଆରପାରିରେ । ଋଷିମୁନିମାନେ

ଘାଟିଆକୁ ଡଙ୍ଗା ଆଣିବା ପାଇଁ ଡାକ ପକାଇଲେ । ଘାଟିଆ ଶୁଣିଲା ନାହିଁ କି ଡଙ୍ଗା ଆଣିଲା ନାହିଁ ।

ଲକ୍ଷ୍ମଣ ଟିକେ ରାଗିଗଲେ । ବଡପାଟିରେ ଡାକ ଗୁଡଇଲେ । କହିଲେ—କରେ ଘାଟିଆ, ନଇରେ ଡଙ୍ଗା ପକାଉଛୁ । ଯାତ୍ରୀମାନଙ୍କୁ ପାର କରିଦେବା ତୋ କାମ । ଶୁଣୁନୁ କାହିଁକି ? ଆମକୁ ଟିକେ ଶୀଘ୍ର ପାର କରିଦେ । ତୋ ଘାଟ କଉଡ଼ି ଦେବାକୁ ଆମେ ପ୍ରସ୍ତୁତ ଅଛୁ । ଡେରି କରୁଛୁ କାହିଁକି ? ଶିବଧନୁ ଦେଖିବାକୁ ଆମେ ମିଥିଳା ଯିବୁ । ଉଚ୍ଛୁର ହେଉଛି । ଆମକୁ ଟିକେ ଶୀଘ୍ର ପାର କରିଦେ ।

ତଥାପି ଘାଟିଆ ଶୁଣିଲା ନାହିଁ । ଜଳଜଳ କରି ଅନାଇଁ ଥାଏ; କିନ୍ତୁ ଡଙ୍ଗା ଲଗାଉ ନ ଥାଏ । ଶେଷରେ ରାମଚନ୍ଦ୍ର ଡାକିଲେ, କହିଲେ କୈବର୍ତ୍ତ ଆମ ଡାକ କ'ଣ ତୋ କାନକୁ ଶୁଭୁନାହିଁ ? ସାପପରି ଆମକୁ ଅନେଇ ରହିଛୁ; ଅଥଚ ଡଙ୍ଗା ଲଗାଉ ନାହୁଁ । ମନରେ କିଛି ଅନ୍ୟକଥା ଭାବୁଛୁ କି ? ଡାକ-ଡାକି ଆମେ ଥକିଲୁଣି । ଜବାବ ଦେଉନାହୁଁ କି କଥା ପଦେ କହୁନାହୁଁ । ଏହାର କାରଣ କଣ ?

କୈବର୍ତ୍ତ ଆଉ ନୀରବ ହୋଇ ରହିପାରିଲା ନାହିଁ । ଡଙ୍ଗା ଫିଟେଇ କାତ ମାରିଲା; କିନ୍ତୁ କୂଳରେ ଲଗାଇଲା ନାହିଁ । ନଈ ଭିତରେ ଡଙ୍ଗାରଖି କହିଲା—ବାବୁ, ତମ ଗୁଣସବୁ ମୁଁ ଯାତ୍ରୀଙ୍କ ମୁହଁରୁ ଶୁଣିସାରିଲିଣି । ବଣରେ କୋଉ କାଳରୁ ପଥର ମୂର୍ତ୍ତି ଆଟା ପଡ଼ିଥିଲା । ତମେ ତାରି ପାଖଦେଇ ଯାଉଥିଲ । ତମ ପାଦରୁ ଧୂଳିକଣାଟିଏ ଉଡ଼ି ସେ ପଥର ଉପରେ ପଡ଼ିବାରୁ

ହବ୍ୟ ସୁନ୍ଦର ନାରୀରୂପ ହୋଇଗଲା । ବାବୁ, ନଉକାଟି ମୋର କାଠରେ ତିଆରି ହୋଇଛି । ପଥର ଆଉ କାଠରେ ଫରକ କ'ଣ ଅଛି । ଦୁଇଟେ ଜଡ଼ ପଦାର୍ଥ । ତମ ପାଦର ଧୂଳିପଡ଼ି ଯଦି ମୋ ନୌକାଟି ସ୍ତ୍ରୀ ରୂପ ହୋଇଯିବ ତା ହେଲେ ମୋ ପେଲା ବୁଡ଼ିଯିବ । ଡଙ୍ଗାଖଣ୍ଡିକ ମୋର ବୃତ୍ତି, ମୋର ବେଉଷା । ଏଥିରେ ଯାତ୍ରୀମାନଙ୍କୁ ପାରିଉତାର କରି ମୁଁ ପେଟ ପୋଷୁଛି । ଏହାକୁ ହରେଇଲେ ମୁଁ ଚଳିବି କେମିତି ? ଖାସ ସେଇ ଭୟରେ ମୁଁ ଡଙ୍ଗା ଖୋଲୁ ନ ଥିଲି । ମୁଁ କାଲୁ ନୁହେଁ ଆଜ୍ଞା । ତମ ଡାକ ମୁଁ ଶୁଣିଛି । ଜାଣିଶୁଣି ମୁଁ ଟାଳଟୁଳ କରୁଥିଲି । ଜିଗର କରି ଡାକିବାରୁ ଆସିଲି । ମନର କଥାଟା ଖୋଲି କହିଦେଲି ଆଜ୍ଞା । ଯଦି ମୋ ଡଙ୍ଗାରେ ପାର ହେବେ, ତା' ହେଲେ ମୁଁ ଆଗେ ତମ ଗୋଡ଼ ଧୋଇ ଦେଇ ଧୂଳିବାଲି ପୋଛି ସଫା କରିଦେବି । ତା' ପରେ ଯାଇ ଡଙ୍ଗାରେ ବସେଇବି ।

ଲକ୍ଷ୍ମଣ ହସିଲେ । କହିଲେ—ଏଇକଥା ପାଇଁ ତୁ ଆମକୁ ଏତେ ଡେରି କଲୁଣି । ହଉହଉ କଳକୁ ଡଙ୍ଗା ଲଗା । ଭାଇଙ୍କ ଗୋଡ଼ ଧୋଇ ଦେ' । ଯେମିତି ଗୋଟିଏ ବୋଲି ବାଲିକଣା ତଳିପାରେ କୋଉଠି ଛପି ନ ରହେ । ତୋ ନଉକା ନାରୀ କା ହେଲେ ଆମ ମିଥିଳା ଯିବା ଭଣ୍ଡୁର ହୋଇଯିବ ଯେ ।

ବିଶ୍ୱାମିତ୍ର ମୁରୁକେଇ ମୁରୁକେଇ ହସୁଥିଲେ । କୈବର୍ତ୍ତ ଡଙ୍ଗା ଲଗାଇଲା । ରାମଚନ୍ଦ୍ରଙ୍କ ଆଗରେ ଛିଡ଼ାହୋଇ ରହିଲା । ପୁଣି ଲକ୍ଷ୍ମଣ କହିଲେ—ଭାଇ ଡେରି କରୁଛନ୍ତି କାହିଁକି ? ପାଦ ବଢ଼େଇ ଦିଅନ୍ତୁ । ଧୂଆଧୋଇ ସରିଲେ ସେପାରିକି ଯିବା ।

ରାମଚନ୍ଦ୍ର ପାଦ ବଢ଼େଇ ଦେଲେ । କୈବର୍ତ୍ତଟି ଚକ୍‌କଣ କରି ପାଦ ଧୋଇଦେଲା । କମରରୁ ଗାମୁଛା ଫିଟେଇ ପୋଛିଦେଲା; ତା'ପରେ ରାମଚନ୍ଦ୍ରଙ୍କୁ ନୌକା ଉପରେ ବସେଇ କାତ ଭିଡ଼ିଲା । ଗଙ୍ଗାନଦୀର ବହଳ ଢେଉ ଉପରେ ନାଚିନାଚି ଚାଲିଥିଲା ନଉକା ।

ବିଶ୍ୱାମିତ୍ରଙ୍କ ପାଖରେ ଛିଡ଼ାହୋଇଥିଲେ ଲକ୍ଷ୍ମଣ । ହାତଯୋଡ଼ି ପ୍ରଶ୍ନକଲେ—ଋଷିବର ! ଗଙ୍ଗାନଦୀକୁ ପତିତପାବନୀ ବୋଲି କାହିଁକି କହନ୍ତି । ଗଙ୍ଗାନଦୀର ଉତ୍ପତ୍ତି ବିଷୟ ଦୟାକରି କୁହନ୍ତୁ ।

ବିଶ୍ୱାମିତ୍ର ଅଳ୍ପ ଟିକିଏ ହସିଦେଲେ । କହିଲେ ବତ୍ସ ଲକ୍ଷ୍ମଣ ! ଏ ତ ତମରି ଘରର ପାଠ । ବାହାର କଥାକୁ ମନଦେଇ ଘୋଷୁଛ ଅଥଚ ଘରୋଇ କଥାକୁ ନଜର ଦେଉନା । ହଉ ଶୁଣ । ତମରି ସୂର୍ଯ୍ୟବଂଶରେ ସଗର ବୋଲି ଜଣେ ରାଜା ଥିଲେ । ସେ ଘୋର ତପସ୍ୟା କରି ଷାଠିଏ ହଜାର ପୁତ୍ର ଲାଭ କରିଥିଲେ । ପୁଅମାନେ ବଡ଼ହୋଇ ବୀରପଣରେ ପ୍ରସିଦ୍ଧି ଲାଭକଲେ । ସେମାନଙ୍କ ବୀରପଣରେ ତ୍ରିଭୁବନପୁର ଥରହର ହେଲା ।

ସଗରରାଜା ମନ ଆନନ୍ଦରେ ବିରାଟ ଅଶ୍ୱମେଧ ଯଜ୍ଞ କଲେ । ଅଶ୍ୱରକ୍ଷା କରିବାର ଭାର ପୁଅମାନଙ୍କ ଉପରେ ଦେଇଥିଲେ । ଯଜ୍ଞଅଶ୍ୱ ମନଇଚ୍ଛା ଆଗେଇ ଯାଉଥିଲା । ତା' ପଛେପଛେ ସଗରରାଜାଙ୍କ ପୁଅମାନେ ଅସ୍ତ୍ରଶସ୍ତ୍ର ଧରି ଚାଲିଥିଲେ । କୌଣସି ରାଜ୍ୟର ରାଜା ଯଜ୍ଞଅଶ୍ୱ ଅଟକାଇବାକୁ ସାହସ କଲେନାହିଁ । ସମଗ୍ର ପୃଥିବୀ ପର୍ଯ୍ୟଟନ କରି ଯଜ୍ଞଅଶ୍ୱ ଅଯୋଧ୍ୟା ଫେରୁଥିଲା । ଯଜ୍ଞପୂର୍ଣ୍ଣ ହୋଇଥିଲେ ସଗରରାଜା ବହୁପୁଣ୍ୟ ଅର୍ଜ୍ଜନ କରିଥାନ୍ତେ ।

ଏ କଥାଟା ଇନ୍ଦ୍ରଙ୍କୁ ଅତି ଅସହ୍ୟ ବୋଧ ହେଲା । ସେ ମାୟାକରି ଯଜ୍ଞଅଶ୍ୱକୁ ଧରିନେଇ, ପାତାଳପୁରରେ ତପସ୍ୟା କରୁଥିବା କପିଳ ମୁନିଙ୍କ ପଛଆଡ଼େ ବାନ୍ଧିଦେଲେ ।

ସଗରରାଜାଙ୍କ ପୁଅମାନେ ଯଜ୍ଞଅଶ୍ୱ ନ ପାଇ ବହୁତ ହୋଇ ପଡ଼ିଲେ । ଚାରିଆଡ଼କୁ ଖୋଜିଗଲେ । ସ୍ୱର୍ଗପୁର ଓ ମର୍ତ୍ତ୍ୟପୁର ବୁଲି ଆସିଲେ । କୌଣସି ସ୍ଥାନରେ ଅଶ୍ୱର ପତ୍ତା ପାଇଲେ ନାହିଁ । ଶେଷରେ ପାତାଳପୁରକୁ ଗଲେ । ଚାରିଆଡ଼େ ଖୋଜା-ଖୋଜି କରି କପିଳ ମୁନିଙ୍କ ତପସ୍ୟା ସ୍ଥାନରେ ଅଶ୍ୱ ଠାବକଲେ । ମନରେ ବିଚାର କଲେ, ଅଶ୍ୱ ଚୋରିକରି ଲୋକଟା ପଳାଉଥିଲା । ଆମକୁ ଦେଖି ଆଉ ଯାଇପାରିଲା ନାହିଁ । ଛଳନାକରି ତପସ୍ୟାରେ ବସିଯାଇଛି । କପିଳ ମୁନିଙ୍କୁ ଅଶ୍ୱଚୋର ବୋଲି ଭାବି ତାଙ୍କୁ ବହୁତ ଗାଳିଗୁଲଜ କଲେ । କ୍ରୋଧରେ ଅଜ୍ଞାନ ହୋଇ କପିଳ ମୁନିଙ୍କ ଉପରେ ମାଡ଼ ଚଳେଇଲେ ।

କପିଳ ମୁନିଙ୍କ ଧ୍ୟାନ ଭାଙ୍ଗିଗଲା । ସେ ତପସ୍ୟାରୁ ଉଠି କ୍ରୋଧ ନେତ୍ରରେ ଚାହିଁଦେଲେ । ତାଙ୍କ କ୍ରୋଧନେତ୍ରରୁ ଭୟଙ୍କର ଅଗ୍ନି ଜାତ ହେଲା । ସେହି କ୍ରୋଧ ଅଗ୍ନିରେ ସଗର ରାଜାଙ୍କର ଷାଠିଏ ହଜାର ବୀରପୁତ୍ର ଦଗ୍ଧ ହେବାକୁ ଲାଗିଲେ ।

ସଗରରାଜା ପୁଅମାନଙ୍କ ଦୁର୍ଦ୍ଦଶା ଜାଣି ବହୁ ଦୁଃଖ କଲେ । ପୁଅମାନଙ୍କ ଚିନ୍ତାରେ କିଛିଦିନ ପରେ ମରିଗଲେ । ବହୁବର୍ଷ ବିତିଗଲା । ତା'ପରେ ସଗର ରାଜାଙ୍କ ବଂଶରେ ଜନ୍ମ ହେଲେ ଭଗୀରଥ । ଭଗୀରଥ ମହାନ୍ ବୀର ଓ ଧର୍ମପରାୟଣ ରାଜା ଥିଲେ । ସେ ନିଜର ପୂର୍ବପୁରୁଷମାନଙ୍କୁ ଉଦ୍ଧାର କରିବାପାଇଁ ଉପାୟ

ଚନ୍ତାକଲେ । ଯେତେ ଚେଷ୍ଟା କଲେ ମଧ କପିଳମୁନିଙ୍କ କ୍ରୋଧାନଳରୁ ପୂର୍ବପୁରୁଷଙ୍କୁ ଉଦ୍ଧାର କରିପାରିଲେ ନାହିଁ । ଶେଷରେ ଘୋର ତପସ୍ୟା ଆରମ୍ଭ କଲେ । ବହୁବର୍ଷ ବିତିଗଲା । ଶେଷରେ ଭଗୀରଥ ଶୂନ୍ୟବାଣୀ ଶୁଣିଲେ ଯେ—ସ୍ୱର୍ଗରୁ ଗଙ୍ଗାନଦୀଙ୍କୁ ଆଣିବାର ବ୍ୟବସ୍ଥା କଲେ, ଗଙ୍ଗାଙ୍କ ପବିତ୍ର ଜଳଧାରା ଦ୍ୱାରା ପୂର୍ବପୁରୁଷମାନେ କପିଳମୁନିଙ୍କ କ୍ରୋଧାନଳରୁ ଉଦ୍ଧାର ହେବେ ।

ଶୂନ୍ୟବାଣୀ ଶୁଣି ମହାରାଜା ଭଗୀରଥ ସ୍ୱର୍ଗକୁ ଗଲେ । ଗଙ୍ଗାନଦୀ କୂଳରେ ବସି ତପସ୍ୟା କଲେ । ତାଙ୍କର କଠୋର ତପସ୍ୟାରେ ଗଙ୍ଗା ଦେବୀ ସନ୍ତୁଷ୍ଟ ହୋଇଗଲେ । କହିଲେ—ବତ୍ସ ଭଗୀରଥ ! ମୁଁ ତୁମ ତପସ୍ୟାରେ ପ୍ରସନ୍ନ ହୋଇଛି । ଏଥର ମୁଁ ସ୍ୱର୍ଗପୁର ଛାଡ଼ି ମର୍ତ୍ତ୍ୟଲୋକକୁ ଯିବି । ମର୍ତ୍ତ୍ୟପୁରରୁ ପାତାଳପୁରକୁ ଯାଇ ତୁମର ପୂର୍ବପୁରୁଷମାନଙ୍କୁ ଉଦ୍ଧାର କରିବି ।

ସେଇଆ ହେଲା । ଗଙ୍ଗାଦେବୀ ସ୍ୱର୍ଗପୁର ତ୍ୟାଗକରି ମର୍ତ୍ତ୍ୟଲୋକକୁ ବିଜେ କଲେ । ପୁଣି ମର୍ତ୍ତ୍ୟଲୋକରୁ ପାତାଳ ଭୁବନକୁ ବିଜେ କଲେ । ଗଙ୍ଗାର ପବିତ୍ର ଜଳ ପ୍ରବାହରେ କପିଳମୁନିଙ୍କ କ୍ରୋଧାନଳ ନିଭିଗଲା । ସଗର ରାଜାଙ୍କର ଷାଠିଏ ହଜାର ପୁତ୍ର ଉଦ୍ଧାର ହୋଇଗଲେ ।

ବୁଝିଲ ଲକ୍ଷ୍ମଣ, ଏହା ହେଉଛି ସତ୍ୟଯୁଗର ଘଟଣା । ସେଇ କାଳରୁ ଗଙ୍ଗାନଦୀ ମର୍ତ୍ତ୍ୟଭୁବନରେ ପ୍ରବାହିତ ହେଉଛନ୍ତି । ଋଷି ଅଭିଶାପରେ ଦଗ୍‌ଧ ହେଉଥିବା ସଗର ରାଜାଙ୍କ ଷାଠିଏ ହଜାର ପୁତ୍ରଙ୍କୁ ମୁକ୍ତ କରିବା କାରଣରୁ ଗଙ୍ଗାଙ୍କୁ ପତିତପାବନୀ ବୋଲି କୁହାଯାଏ । ଏବେ ବି ବହୁ ପାପୀ ଗଙ୍ଗାନଦୀରେ ବୁଡ଼

ପକାଇ ଉଦ୍ଧାର ହେଉଛନ୍ତି । ପତିତପାବନୀ ଗଙ୍ଗା ଭାରତୀୟ ସଂସ୍କୃତିରେ ଅତି ଉଚ୍ଚ ଆସନ ଲାଭ କରିଛନ୍ତି ।

ବିଶ୍ୱାମିତ୍ରଙ୍କ କଥା ସରିଲା ବେଳକୁ ନଉକାଟି କୂଳରେ ଲାଗିଯାଇଥିଲା । ରାମ ଲକ୍ଷ୍ମଣ ବିଶ୍ୱାମିତ୍ର ଓ ଅନ୍ୟାନ୍ୟ ଋଷିମାନେ ଡଙ୍ଗାରୁ ଓହ୍ଲାଇ ମିଥିଳା ରାଜ୍ୟକୁ ବାହାରିଗଲେ ।

ମିଥିଳା ରାଜା ଜନକ ଝିଅ ବିବାହ ପାଇଁ ସ୍ୱୟଂବର ସଭା ଆୟୋଜନ କରିଥିଲେ । ପଣ ରଖିଥିଲେ ଯିଏ ଶିବଧନୁରେ ଗୁଣ ଚଢ଼ାଇ ଶର ମାରିପାରିବ ସିଏ ସୀତାଙ୍କୁ ବିବାହ କରିବ । ବହୁତ ରାଜା ସ୍ୱୟଂବର ଉତ୍ସବରେ ଯୋଗ ଦେଇଥିଲେ । ଶିବଧନୁ କେହି ଟେକି ପାରିଲେ ନାହିଁ । ଲାଜରେ ତଳକୁ ମୁହଁ କରି ବସିଲେ ।

ବିଶ୍ୱାମିତ୍ରଙ୍କ ନିର୍ଦ୍ଦେଶକ୍ରମେ ରାମଚନ୍ଦ୍ର ଶିବଧନୁ ପାଖକୁ ଗଲେ । ବିରାଟ ଲୁହା ସିନ୍ଦୁକ ଭିତରୁ ଧନୁଟିକୁ ଫୁଲ ପରି ଟେକି ଆଣିଲେ । ଗୁଣ ଚଢ଼ାଇ ଘନଘନ ଟଙ୍କାର କଲେ । ରାମଚନ୍ଦ୍ରଙ୍କ ଟଙ୍କାର ସହି ନ ପାରି ଧନୁଟି ମଝି ଜାଗାରୁ ଦି'ଖଣ୍ଡ ହୋଇ ଭାଙ୍ଗି-ଗଲା । ଉପସ୍ଥିତ ଦର୍ଶକମାନେ ରାମଚନ୍ଦ୍ରଙ୍କ ବୀରତ୍ୱ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଜନକ ରାଜାଙ୍କ ଇଙ୍ଗିତ ପାଇ ସୀତା-ଦେବୀ ରାମଚନ୍ଦ୍ରଙ୍କ ଗଳାରେ ବରଣମାଳା ଝୁଲେଇ ଦେଲେ । ରାମଚନ୍ଦ୍ରଙ୍କ ମୁଖରେ ସ୍ମିତହାସ୍ୟ ଫୁଟି ଉଠିଲା । ସୀତାଦେବୀଙ୍କ ଗୋଲାପି ଅଧରରେ ମଧ୍ୟ ସରୁ ହସର ରେଖାଟିଏ ଖେଳିଗଲା ।

ସୀତାଙ୍କ ଚାରିପାଖରେ ତାଙ୍କର ପ୍ରିୟ ସହଚରୀମାନେ ବେଢ଼ି ରହିଥିଲେ । ସେମାନେ ରାମ ସୀତାଙ୍କୁ ଚାହିଁ ଆନନ୍ଦରେ

ହସବଜାର ଲୁଟ କରିଦେଲେ । ସୀତାଦେବୀ ଲଜ୍ଜାର ହୋଇ ରାମଚନ୍ଦ୍ରଙ୍କ ପାଖରୁ ପଛକୁ ହଟି ଆସିଲେ ।

ସେଇଠି ଛିଡ଼ା ହୋଇଥିଲେ ଲକ୍ଷ୍ମଣ । ମଧୁର ସ୍ୱରରେ କହିଲେ, କ ଭାଉଜ ! ଏତିକିବେଳୁ ତ ପଛଘୁଞ୍ଚା ଦେଲଣି । ଅସଲ ମଜ୍ଜା ବେଳ ତ ଆହୁରି ଡେରି ଅଛି ।

ସୀତା ଆଗରୁ ସଖୀମାନଙ୍କଠାରୁ ଲକ୍ଷ୍ମଣଙ୍କ ପରିଚୟ ପାଇଥିଲେ । କୌତୁକ କରି କହିଲେ—କିଏ ତୁମେ ଅପରିଚିତ ଯୁବକ ?

ଲକ୍ଷ୍ମଣ ଟିକେ ଗମ୍ଭୀର ହୋଇଗଲେ । କହିଲେ—କ'ଣ ଅପରିଚିତ ଯୁବକ ସଙ୍ଗେ କଥା କହିବା ମନା ? ଏତେ ଲୋକଙ୍କ ଆଗରେ ଆଜ୍ ଜଣେ ଅପରିଚିତ ଯୁବକକୁ ମନପ୍ରାଣ ବାଣ୍ଟି ଦେଲ କେମିତି ?

ସେ ତ ଶିବଧନୁ ଭାଙ୍ଗି ବୀରତ୍ୱର ପରିଚୟ ଦେଇଛନ୍ତି ।
ଆଉ ଏଥିପାଇଁ ଯିଏ ସହଯୋଗ କଲେ—
ସେ ଉପଯୁକ୍ତ ପୁରସ୍କାର ପାଇବେ ।
କି ପୁରସ୍କାର ମିଳିବ ।
ମନଲକ୍ଷି ।
ମନ ପୁଣି ଲକ୍ଷିହେବ କେମିତି ?
ଉର୍ମିଳାକୁ ଦେଖିଲେ ଠିକ୍ ବୁଝି ପାରିବ ।

ହସିହସି ସୀତାଦେବୀ ଆଗେଇ ଗଲେ । ତାଙ୍କର ଗତି-ପଥକୁ ଚାହିଁ ହସ ଝରଉଥିଲେ ଲକ୍ଷ୍ମଣ ।

ଜନକରାଜା ସିଂହାସନରୁ ଉଠିଆସି ବିଶ୍ୱାମିତ୍ରଙ୍କ ପାଖରେ ଛିଡ଼ା ହେଲେ । ବିନମ୍ର ହୋଇ କହିଲେ—ଋଷିବର, ଏବେ ରାମ ସୀତାଙ୍କ ବିଭାଘର ଆୟୋଜନ କରନ୍ତୁ ।

ବିଶ୍ୱାମିତ୍ର ମହର୍ଷି ସୀତାଦେବୀଙ୍କ ଉକ୍ତି ଶୁଣି ମନେମନେ ଆନନ୍ଦ ଅନୁଭବ କରୁଥିଲେ । ଜନକ ରାଜାଙ୍କ କଥା ଶୁଣି କହିଲେ—ମିଥିଳାପତି, ରାମ ସୀତାଙ୍କ ବିଭାଘର ତ ହେବ, ତା ସଙ୍ଗେସଙ୍ଗେ ଲକ୍ଷ୍ମଣଙ୍କ ସହିତ ଉର୍ମିଳାଙ୍କୁ ବିଭାଦେବାର ବ୍ୟବସ୍ଥା କର । ଜନକରାଜା ମନେମନେ ଅତିଶୟ ଆନନ୍ଦ ଅନୁଭବ କଲେ । କହିଲେ—ଋଷିବର ! ଆପଣଙ୍କ ପ୍ରସ୍ତାବକୁ ମୁଁ ଅନ୍ତର ସହିତ ଗ୍ରହଣ କରୁଛି । ଦୟାକରି ଆପଣ ତାର ବ୍ୟବସ୍ଥା କରନ୍ତୁ ।

ତା'ପରେ ଜନକ ରାଜା ଅଯୋଧ୍ୟାକୁ ଦୂତ ପଠାଇଦେଲେ । ଦୂତ ମୁଖରୁ ପୁଅ ଦୁଇଜଣଙ୍କ ଶୁଭ ବିବାହ ସମ୍ବାଦ ପାଇ ଦଶରଥ ସୈନ୍ୟ ସାମନ୍ତ ନେଇ ମିଥିଳାରେ ପହଞ୍ଚିଲେ । ରାମ ସୀତାଙ୍କ ବିବାହ ପରେ ଲକ୍ଷ୍ମଣ ଓ ଉର୍ମିଳାଙ୍କ ବିବାହ ଅନୁଷ୍ଠିତ ହେଲା ।

ଜନକ ରାଜାଙ୍କ ସାନ ଭାଇଙ୍କ ନାମ କୁଶଧ୍ୱଜ । ମାଣ୍ଡବୀ ଓ ଶ୍ରୁତକୀର୍ତ୍ତି ବୋଲି ତାଙ୍କର ଦୁଇ ଝିଅ ଥିଲେ । ବିଶ୍ୱାମିତ୍ରଙ୍କ ପ୍ରସ୍ତାବକ୍ରମେ ଭରତଙ୍କ ସହିତ ମାଣ୍ଡବୀ ଓ ଶତ୍ରୁଘ୍ନଙ୍କ ସହିତ ଶ୍ରୁତକୀର୍ତ୍ତିଙ୍କର ବିବାହ ମଧ୍ୟ ହୋଇଗଲା । ଦଶରଥ ମହାରାଜା ଅତି ଆନନ୍ଦରେ ଚାରି ପୁଅ, ଚାରି ବୋହୂଙ୍କ ସହିତ ଅଯୋଧ୍ୟା ବିଜେକଲେ । ଅଯୋଧ୍ୟାରେ ଆନନ୍ଦର ତେଉ ଖେଳିଗଲା । ମଙ୍ଗଳ ବାଦ୍ୟରେ ଅଯୋଧ୍ୟା ଉଚ୍ଛୁଳି ପଡ଼ିଲା । ପ୍ରଜାମାନେ ଭୋଜି ମଉଜରେ ଯୋଗ ଦେଇ ଅପାର ଆନନ୍ଦ ଭୋଗ କଲେ ।

ପୁଅମାନଙ୍କ ଦାମ୍ପତ୍ୟ ଜୀବନର ସୁଖଭୋଗ ଦେଖି ଦଶରଥ ଭାରି ଖୁସି ହେଉଥିଲେ । ପୁଅ ବୋହୂମାନଙ୍କ ମଙ୍ଗଳ କାମନା କରି ଦାନ ଧ୍ୟାନ କରୁଥିଲେ । କୌଶଲ୍ୟା, କୈକେୟୀ ଓ ସୁମିତ୍ରା ଆଦି ରାଣୀମାନେ ଗୁଣବନ୍ତ ବୋହୂମାନଙ୍କୁ ପାଇ ଆନନ୍ଦରେ ଦିନ କାଟୁଥିଲେ ।

କୈକେୟୀ ରାଣୀଙ୍କ ବାପା ଥିଲେ ଅଶ୍ୱପତି । ସେ କେକୟ ଦେଶର ରାଜା ଥିଲେ । ନାତି ଭରତଙ୍କୁ ସେ ଭାରି ଭଲ ପାଆନ୍ତି । ଭରତଙ୍କୁ ଦେଖିବା ପାଇଁ ସେ ତାଙ୍କ ପୁଅ ଯୁଧାଜିତଙ୍କୁ ଅଯୋଧ୍ୟା ପଠାଇଲେ । ଦଶରଥ ଯୁଧାଜିତଙ୍କଠାରୁ କେକୟ ରାଜାଙ୍କ ମନର ଅଭିଳାଷ କଥା ଜାଣିପାରି ଭରତଙ୍କୁ ମାମୁଁ ଘରକୁ ପଠାଇ ଦେଲେ । ଭରତ ଶତ୍ରୁଘ୍ନଙ୍କୁ ସାଙ୍ଗରେ ନେଇ ଅଜାଙ୍କୁ ଦେଖା-କଲେ । ଅଜା ଆଈଙ୍କ ସ୍ନେହରେ ବନ୍ଦୀ ହୋଇ ଭରତ ଓ ଶତ୍ରୁଘ୍ନ କେକୟ ରାଜ୍ୟରେ କିଛିଦିନ ଅଟକି ଗଲେ ।

ରାମଚନ୍ଦ୍ରଙ୍କୁ ସିଂହାସନରେ ଅଭିଷିକ୍ତ କରି ଦଶରଥ ବିଶ୍ରାମ ନେବାକୁ ଚିନ୍ତା କଲେ । ଦିନେ ମନ୍ତ୍ରୀ ଓ ଶିଷ୍ଟ ବିଶିଷ୍ଟ ପ୍ରଜାମାନଙ୍କୁ ଡାକି ଦଶରଥ ସେମାନଙ୍କ ଆଗରେ ମନ କଥା ଖୋଲି କହିଲେ । ସମସ୍ତେ ଦଶରଥଙ୍କ ପ୍ରସ୍ତାବକୁ ଆଗ୍ରହର ସହିତ ଗ୍ରହଣ କରିନେଲେ । ରାମଚନ୍ଦ୍ର ଅଯୋଧ୍ୟାରେ ରାଜା ହେବା କଥା ଶୁଣି ସମସ୍ତେ ଆନନ୍ଦ ଅନୁଭବ କଲେ । ଅଭିଷେକ ଦିନ ମଧ୍ୟ ସ୍ଥିର ହୋଇଗଲା ।

କୈକେୟୀ ରାମଚନ୍ଦ୍ରଙ୍କୁ ଭରତଠାରୁ ବେଶି ଭଲ ପାଆନ୍ତି । ସେ ରାମଚନ୍ଦ୍ରଙ୍କ ଅଭିଷେକ କଥା ଶୁଣିପାରି ଆନନ୍ଦ ଅନୁଭବ

କଲେ ; କିନ୍ତୁ ପରେ କୁଜା ଦାସୀ ମନ୍ଥରାର କୁପରାମର୍ଶ ଶୁଣି ତାଙ୍କ ମନର ଭାବ ବଦଳିଗଲା । ସେ ଦଶରଥ ରାଜାଙ୍କୁ ଡକାଇନେଲେ । କାଳଦା କରି ଦୁଇଟି ବର ମାଗିଲେ । ଦଶରଥ କୈକେୟୀଙ୍କୁ ଖୁସି କରିବାପାଇଁ ଦୁଇଟି ବର ଦେବାକୁ ସତ୍ୟ କଲେ । କହିଲେ, କୈକେୟୀ ସତ୍ତ ପାହିଲେ ରାମଚନ୍ଦ୍ର ରାଜା ହେବ । ଯାହା ମାଗୁଛ ମାଗ । ତିନିବାର ସତ୍ୟ କରି କହୁଛି, ଯାହା ମାଗିବ ତାହା ଦେବି । ମନଖୋଲି ବର ମାଗ ।

କୈକେୟୀ ରାଜାଙ୍କର ସରଳତାର ସୁଯୋଗ ନେଇ କହିଲେ– ମହାରାଜ, ସତ୍ୟ କରି ସାରିଲେଣି । ଏବେ ମୋତେ ଦୁଇଟି ବର ଦିଅନ୍ତୁ । ପ୍ରଥମ ବରରେ ମୋ ପୁଅ ଭରତ ଅଯୋଧ୍ୟାରେ ରାଜା ହେବ । ଦ୍ୱିତୀୟ ବରରେ ରାମଚନ୍ଦ୍ର ଚଉଦ ବର୍ଷ ପାଇଁ ବନବାସ କରିବ ।

ଦଶରଥ ରାମଚନ୍ଦ୍ରଙ୍କୁ ନିଜର ପ୍ରାଣଠାରୁ ଅଧିକ ଭଲ ପାଉଥିଲେ । ରାମଚନ୍ଦ୍ରଙ୍କ ବନବାସ କଥା ଶୁଣି ସେ ଦୁଃଖରେ କାନ୍ଦି କାନ୍ଦି ଅଜ୍ଞାନ ହୋଇଗଲେ ।

ରାମଚନ୍ଦ୍ର ପୁରବାସୀମାନଙ୍କ ମୁହଁରୁ ସବୁକଥା ଶୁଣି ପାରିଲେ । ପିତୃସତ୍ୟ ରକ୍ଷା କରିବାପାଇଁ ବକଳ ପିନ୍ଧି ବନବାସ କରିବାକୁ ବାହାରିପଡ଼ିଲେ ।

ଲକ୍ଷ୍ମଣ କାନ୍ଦିକାନ୍ଦି ରାମଚନ୍ଦ୍ରଙ୍କ ପାଖରେ ପହଞ୍ଚିଲେ । କହିଲେ—ଭାଇ, ତମେ ବଣକୁ ଯାଇପାରିବ ନାହିଁ । ଅଭିଷେକ ଉତ୍ସବର ସବୁ ଆୟୋଜନ ସରିଯାଇଛି । ତମେ ଅଯୋଧ୍ୟା ସିଂହାସନ ଆରୋହଣ କର । ରାଜାହୋଇ ଆନନ୍ଦରେ ପ୍ରଜା

ପାଳନ କର । ବାପା ନିଜ ଇଚ୍ଛାରେ କୈକେୟୀ ମା'ଙ୍କୁ ଏପରି ବର ଦେଇ ନାହାନ୍ତି । କପଟ କରି କୈକେୟୀମା' ଏ ବର ମାଗିଛନ୍ତି । ଏଣୁ ଏପରି ଚନ୍ତାନ୍ତକୁ ମାନି ନେବାର କୌଣସି କାରଣ ନାହିଁ । ତମେ ରାଜପୁରୀକୁ ଫେରିଚାଲ । ଯଦି କେହି ତମ ରାଜା ହେବା ବିରୁଦ୍ଧରେ ସ୍ୱର ଉଠାଏ—ମୁଁ ତାର ମୁଣ୍ଡ କାଟି ଉଡ଼େଇ ଦେବି । ଗୋଟାଏ ବାଜେ କଥା ଶୁଣି ରାଜ୍ୟ ଛାଡ଼ି ବଣକୁ ଯିବା ଉଚିତ ନୁହେଁ ।

ରାମଚନ୍ଦ୍ର ଲକ୍ଷ୍ମଣଙ୍କୁ ଆଦରରେ ଆଲିଙ୍ଗନ କରି କହିଲେ— ଲକ୍ଷ୍ମଣ, ଯାହା ହେଲେ ବି ବାପା ସତ୍ୟକରି ଦୁଇଟି ବର ପ୍ରଦାନ କରିଛନ୍ତି । ମୁଁ ବଣକୁ ନ ଗଲେ ସେ ଅସତ୍ୟ ହୋଇଯିବେ । ଆମ ବଂଶରେ କଳଙ୍କ ରହିଯିବ । ସିଂହାସନ ଲୋଭରେ ମୁଁ ପିତୃସତ୍ୟ ଲଙ୍ଘନ କରିବି କପରି ? ତୁ ମନରେ ରାଗ କରନା । ଚଉଦ ବର୍ଷ ପୂରିଗଲେ ମୁଁ ପୁଣି ତୋ ପାଖକୁ ଫେରିଆସିବି ।

ଲକ୍ଷ୍ମଣ ହାତଯୋଡ଼ି କହିଲେ—ଭାଇ ତମେ ଯଦି ବଣକୁ ଯିବ ତା'ହାଲେ ମୋତେ ସଙ୍ଗରେ ନିଅ । ମୁଁ ତମକୁ ଛାଡ଼ି ଏଠି ରହି ପାରିବି ନାହିଁ । ତମେ ବକଳ ପିନ୍ଧି, ମୁଣ୍ଡରେ ଜଟାଭାର ବାନ୍ଧି ବଣରେ ବୁଲିବ । ଫଳମୂଳ ଖାଇ ଗଛମୂଳେ ଶୋଇବ । ଆଉ ଏଠି ମୁଁ ଦୁଧ ଘିଅ ସରପୁଳି ଖାଇ ଗଜଦନ୍ତ ପଲଙ୍କରେ ପଡ଼ିରହିବି । ଏକଥା ମୋ ଯୋଗେ ହୋଇପାରିବ ନାହିଁ । ତମେ ଯୁଆଡ଼େ ଯିବ ମୁଁ ସିଆଡ଼େ ଯିବି ।

ରାମଚନ୍ଦ୍ର ଲକ୍ଷ୍ମଣଙ୍କୁ କୋଳକରି ବହୁତ ବୁଝାଇଲେ । କହିଲେ - ଲକ୍ଷ୍ମଣ, ବନବାସଟା ପିଲାଖେଳ ନୁହେଁ । ତୋ ନରମ ପାଦରେ କଣ୍ଟା ଫୁଟିଯିବ । ଅନେକ ଉପବାସରେ ରହି ତୋ ଦେହ ଖିନ୍ନ

ହୋଇଯିବ । ବଣରେ ବାଘ, ଭାଲୁ ଆଦି ହିଂସ୍ରଜନ୍ତୁ ପୂରି ରହିଛନ୍ତି । ତାଙ୍କର ଭୟଙ୍କର ଗର୍ଜନ ଶୁଣିଲେ ତୁ ପ୍ରାଣଆ ହୋଇଯିବୁ । ବଣ ପାହାଡ଼ରେ ବୁଲିବା ଭାରି କଷ୍ଟ । ତୁ ଗୋଟିଏ ଦିନ ରହିପାରିବୁ ନାହିଁ । ଏଣୁ ମୋ କଥା ମାନ । ଏଇଠି ରହ । ମିଛନା ଦେହ ଚୂନା କରିବାକୁ ମନ ବଳାଉଛୁ କାହିଁକି ?

ଲକ୍ଷ୍ମଣ କାନ୍ଦି ପକାଇଲେ । କହିଲେ—ଭାଇ ତମକୁ ଛାଡ଼ି ମୁଁ ଘଡ଼ିଏ ବଞ୍ଚି ପାରିବି ନାହିଁ । ଦୟାକରି ମୋତେ ସଙ୍ଗରେ ନେଇ ଚାଲନ୍ତୁ । ଭାଇ ପରିପାଖେ ପାଖେ ରହି ମୁଁ ତମର ସେବା କରିବି । ନ ଖାଇ ନ ପିଇ, ତମରି ପଛେପଛେ ବୁଲିବି ପଛେ ଏଠି ରହିପାରିବି ନାହିଁ । ମତେ ପର ବୋଲି ଭାବୁଛ ନା କଣ ? ମୁଁ ପରା ତମ ସାନ ଭାଇ । ସାନ ଭାଇର ଅଳି ଶୁଣ । ନିଷ୍ଠୁର ହୁଅନା । ମୁଁ ଗଲେ ତମର କିଛି କ୍ଷତି ହେବ ନାହିଁ । ଜମା ମନା କରନା । ଦୟାକରି ମତେ ସଙ୍ଗରେ ନେଇଚାଲ । ଯଦି ମତେ ସଙ୍ଗରେ ନ ନେଇ ଏକଲା ବଣକୁ ଯିବ ତାହାଲେ ମୁଁ ନିଶ୍ଚୟ ଜୀବନ ହରେଇ ଦେବି ।

ରାମଚନ୍ଦ୍ର ଦେଖିଲେ ଅବୁଝା ଲକ୍ଷ୍ମଣଙ୍କୁ ଆଉ ବୁଝାଇ ହେବ ନାହିଁ । ସଙ୍ଗରେ ନ ନେଲେ ନିଶ୍ଚୟ ଜୀବନ ହରେଇ ଦେବ । ତାହାଲେ କରାଯିବ କଣ ? ଟିକିଏ ଭାବିଚିନ୍ତି କହିଲେ— ଲକ୍ଷ୍ମଣ ତତେ ସାଙ୍ଗରେ ନେବାକୁ ମୋର ମନା ନାହିଁ । ତେବେ ବାପା ତ ମୋତେ ଏକଲା ଯିବାକୁ କହିଛନ୍ତି । ତତେ ସାଙ୍ଗରେ ନେଲେ ତାଙ୍କ ସତ୍ୟ ରହିବ ନାହିଁ ।

ଲକ୍ଷ୍ମଣ କହିଲେ—ଭାଇ ମତେ କିଛି କୁହନା । କୈକେୟୀମା' ତମ ବନବାସ ପାଇଁ ବର ମାଗିଛନ୍ତି ଏକଥା ମୁଁ ଜାଣେ । ମୋ ବନବାସ କଥା ସେ ଉଠାଇ ନାହାନ୍ତି । କିନ୍ତୁ ରାମ, ଲକ୍ଷ୍ମଣଙ୍କର ଭ୍ରାତୃଭାବ ସେ ଜାଣନ୍ତି ନାହିଁ । ରାମ, ଲକ୍ଷ୍ମଣ ଏକ ଓ ଅଭିନ୍ନ । ଏକ ମନ, ଏକ ଆତ୍ମା । ଜଣକୁ ଛାଡ଼ି ଆଉ ଜଣେ ରହିପାରେନା । ରାମ ଯେଉଁଠି, ଲକ୍ଷ୍ମଣ ସେଇଠି । ଏକଥା ଆଉ କିଏ ଜାଣୁ ନ ଜାଣୁ ତମେ ଭଲକରି ଜାଣ । କହିଲ ପରା ତମକୁ ଛାଡ଼ି ମୁଁ ଦଣ୍ଡେ ରହିପାରିବି ନାହିଁ । ତମେ ଯୁଆଡ଼େ ଯିବ, ମୁଁ ସିଆଡ଼େ ଯିବି । ହେଇ ମୁଁ ତମ ଆଗେଆଗେ ଚାଲିଲି । ଯଦି ତମର ମନ ହେଉଛି, ତାହାଲେ କୋଦଣ୍ଡରେ କାଣ୍ଡ ବସାଇ ମତେ ମାରି ଦିଅ । ତା'ପରେ ଏକଲା ବଣକୁ ଯିବାରେ ଆଉ କିଛି ବାଧା ରହିବ ନାହିଁ । ଏହା କହି ଲକ୍ଷ୍ମଣ ଆଗେଆଗେ ପାଦ ପକାଇଲେ ।

ରାମଚନ୍ଦ୍ର ଆଉ କିଛି କହିଲେ ନାହିଁ । ଲକ୍ଷ୍ମଣଙ୍କ ଭ୍ରାତୃଭକ୍ତି ଦେଖି ତାଙ୍କ ଆଖି ଛଳଛଳ ହୋଇଆସିଲା । ସେ ନୀରବରେ ଲକ୍ଷ୍ମଣଙ୍କ ପଛେପଛେ ଚାଲିବା ଆରମ୍ଭ କଲେ ।

ସୀତାଦେବୀ ଭିଆସରୁ ବାହାରି ଆସି ରାମଚନ୍ଦ୍ରଙ୍କ ପଛେପଛେ ଚାଲିଲେ । ରାମଚନ୍ଦ୍ର ଯେତେ ବାରଣ କଲେ ସେ ମାନିଲେ ନାହିଁ । ଶେଷରେ ମହାବୀର ରାମଚନ୍ଦ୍ର ସାନଭାଇ ଲକ୍ଷ୍ମଣ ଓ ସ୍ତ୍ରୀ ସୀତାଙ୍କ ସହିତ ବନବାସ କରିବାକୁ ବାହାରି ପଡ଼ିଲେ ।

ରାମ ଲକ୍ଷ୍ମଣଙ୍କୁ ଝୁରିଝୁରି ଦଶରଥ ମହାରାଜା ଅଳ୍ପଦିନ ମଧ୍ୟରେ ମରିଗଲେ । ଖବର ପାଇ ଭରତ ମାମୁଁ ଘରୁ ଫେରିଲେ ।

ଦଶରଥ ମହାରାଜାଙ୍କ ଶବ ସଂସ୍କାର କରି ରାମଚନ୍ଦ୍ରଙ୍କୁ ବନବାସରୁ ଫେରାଇ ଆଣିବାକୁ ବାହାରି ପଡ଼ିଲେ ।

ଭରତ ରାଜପୋଷାକ ଉତ୍ତାରି ଦେଲେ । ବକଳ ପିନ୍ଧି ଜଟା ବାନ୍ଧି ବଣକୁ ଗଲେ । ସରଯୂ ନଦୀ ପାରି ହୋଇ ପାଦରେ ଗୃଲି-ଗୃଲି ବଣପରେ ବଣ ବୁଲି ବଡ଼ିଭାଇ ରାମଚନ୍ଦ୍ରଙ୍କୁ ଖୋଜିଲେ । ତାଙ୍କ ପଛେପଛେ ଅଯୋଧ୍ୟାର ସୈନ୍ୟସାମନ୍ତ ଓ ସୁମନ୍ତ୍ର ଆଦି କେତେଜଣ ମନ୍ତ୍ରୀ ମଧ୍ୟ ଯାଇଥିଲେ ।

ଶୃଙ୍ଗବେର ପୁରରେ ଗୁହକ ଶବର ରାଜତ୍ୱ କରୁଥିଲା । ସେ ଭରତ ଓ ତାଙ୍କ ପଛରେ ଗୃଲିଥିବା ସୈନ୍ୟସାମନ୍ତଙ୍କୁ ଦେଖି ବଡ଼ ଚିନ୍ତାରେ ପଡ଼ିଗଲା । ସେ ଥିଲା ରାମଚନ୍ଦ୍ରଙ୍କ ମିତ । ରାମଚନ୍ଦ୍ର ବଣକୁ ଗଲାବେଳେ ତାରି ଜଙ୍ଗଲୀ ରାଜ୍ୟ ଦେଇ ଯାଇଥିଲେ । ସମାତା କୈକେୟୀଙ୍କ ଚକ୍ରାନ୍ତରେ ରାମଚନ୍ଦ୍ରଙ୍କୁ ବନବାସ କରିବାକୁ ପଡ଼ିଲା ବୋଲି ସେ ଧାରଣା କରି ନେଇଥିଲା । ଏବେ ସେହି ସମାତାଙ୍କ ପୁଅ ଭରତ କାହିଁକି ସୈନ୍ୟସାମନ୍ତ ଧରି ବଣକୁ ଆସିଛନ୍ତି—ଏ କଥାର ମର୍ମ ସେ ସହଜରେ ବୁଝିପାରିଲା ନାହିଁ । ଭାବିଭାବି ସ୍ଥିର କଲା, ଭରତ ଅଯୋଧ୍ୟାର ରାଜା ହେଲା ପରେ ବହୁତ ବଦଳି ଯାଇଛନ୍ତି । ମାଆଙ୍କ କୁମନ୍ତ୍ରଣାରେ ରାମଚନ୍ଦ୍ରଙ୍କୁ ମାରି ସିଂହାସନ ନିଷ୍କଣ୍ଟକ କରିବାକୁ ମନ ବଳାଇଛନ୍ତି । ତାହା ନ ହେଲେ ସୈନ୍ୟସାମନ୍ତ ଧରି ବଣକୁ ଆସିଥାନ୍ତେ କାହିଁକି ? ଗୁହକ ମନେମନେ ରାଗିଗଲା । ଧନୁଶର ଧରି ଭରତଙ୍କ ସହିତ ଯୁଦ୍ଧ କରିବାକୁ ତିଆରି ହୋଇ ରହିଲା ।

ଭରତ ଗୁହକଙ୍କୁ ଦେଖି କାନ୍ଦାକାନ୍ଦି ରାମଚନ୍ଦ୍ରଙ୍କ କଥା ପଚାରିଲେ । ତାଙ୍କୁ ଫେରାଇ ନେଇ ଅଯୋଧ୍ୟାରେ ରାଜା କରିବାକୁ ସେ ଆସିଛନ୍ତି ବୋଲି କହିଲେ । ଗୁହକ ଭରତଙ୍କ କଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । ତାଙ୍କର ରାଗ ବରଫଖଣ୍ଡ ପରି ମିଳେଇ ଗଲା । କହିଲେ—ଭାଇ, ମୁଁ ତମକୁ ଭୁଲ ବୁଝିଥିଲି । ଏବେ ଜାଣିଲି ତମେ ଜଣେ ସଚ୍ଚା ଭାଇ । ଯାହା କରିବାକୁ ଯାଉଛ ସେଥିରେ ତମର ପ୍ରକୃତ ଭାଇପଣିଆ ପ୍ରକାଶ ପାଇବ । ତେବେ ରାମଚନ୍ଦ୍ର ଏପାଖ ବଣରେ ନାହାନ୍ତି । ସେ ଭରଦ୍ୱାଜ ମୁନିଙ୍କ ଆଶ୍ରମ ପାଖ ବଣରେ ଥାଇପାରନ୍ତି । ସେଠିକି ଯାଅ । ଜଗର କରି ତାଙ୍କୁ ଫେରାଇ ନିଅ ।

ଭରତ ଭରଦ୍ୱାଜ ମୁନିଙ୍କ ଆଶ୍ରମକୁ ଗଲେ । ସେଠାରେ ରାମଚନ୍ଦ୍ରଙ୍କ ଦେଖା ପାଇଲେ ନାହିଁ । ଭରଦ୍ୱାଜ ମୁନିଙ୍କ ଠାରୁ ନିର୍ଦ୍ଦେଶ ପାଇ ଚିତ୍ରକୂଟକୁ ବାଟ କାଟିଲେ ।

ଚିତ୍ରକୂଟ ପର୍ବତରେ ରାମ, ଲକ୍ଷ୍ମଣ କୁଡ଼ିଆମାନ ରହିଥିଲେ । ଭରତ ସୈନ୍ୟସାମନ୍ତ ଧରି ସେ ବଣରେ ପ୍ରବେଶ କରିବାରୁ ବଣଜନ୍ତୁମାନେ ଭୟ ପାଇ ଏଣେତେଣେ ଦଉଡ଼ାଦଉଡ଼ି କରି ପଳାଉଥିଲେ । ସୈନ୍ୟସାମନ୍ତଙ୍କ ଗହଳ ଓ ପାଟିତୁଣ୍ଡ ଶୁଣି ଲକ୍ଷ୍ମଣ ଉଠିପଡ଼ିଲେ । ଚାରିଆଡ଼କୁ ଚାହିଁଲେ । ଗଛ ଗହଳରେ କିଛି ଦେଖିପାରିଲେ ନାହିଁ । ପର୍ବତ ଉପରେ ଗୋଟିଏ ଉଚ୍ଚା ଶାଳଗଛ ଥିଲା । ସେ ଶାଳଗଛ ଉପରକୁ ଚଢ଼ିଲେ । ଦେଖିଲେ ଭରତ ଆଗେଆଗେ ଚାଲିଛନ୍ତି । ଅଗଣିତ ସୈନ୍ୟସାମନ୍ତ ତାଙ୍କ ପଛେପଛେ ଚାଲିଛନ୍ତି । ଅଯୋଧ୍ୟାର ଜୟ ପତାକା ବଣ ପବନରେ ଫରଫର ହୋଇ ଉଡ଼ୁଛି । ଭରତଙ୍କ ଏହି ଅଗ୍ରଗତି

ବନଯାତ୍ରାକୁ ସେ ଭରତଙ୍କ ଅଗ୍ରଜଙ୍କ ଆକ୍ରମଣ ବୋଲି ବୁଝି-ନେଲେ । ଗଛରୁ ଓହ୍ଲାଇ ଆସି ରାମଚନ୍ଦ୍ରଙ୍କ ପାଖରେ ପହଞ୍ଚିଲେ । ଭୟଙ୍କର ରାଗରେ ତାଙ୍କର ଆପାଦମସ୍ତକ କମ୍ପି ଯାଉଥିଲା ।

ହାତଯୋଡ଼ି ମହାବୀର ଲକ୍ଷ୍ମଣ ରାମ ସୀତାଙ୍କ ଆଗରେ ଛିଡ଼ା ହେଲେ । କହିଲେ—ଭାଇ, ତମେ ନିଜକୁ ଯେପରି ଭାବୁଛ ଦୁନିଆ ସେପରି ନୁହେଁ । ତମେ ପିତୃସତ୍ୟ ପାଳନ କରି ମାନେମାନେ ବଣକୁ ଚାଲିଆସିଲ । ସୁବିଧା ପାଇ ଭରତ ରାଜସିଂହାସନରେ ବସି ଅଯୋଧ୍ୟାର ରାଜା ହେଲା । ସୈନ୍ୟ ସେନାପତିମାନେ ବର୍ତ୍ତମାନ ତା ଅଧୀନରେ । ଯାହା ଇଚ୍ଛା ତାହା କରିପାରିବ । ଯୋଉ ଭରତକୁ ତମେ ଏତେ ସ୍ନେହ କରିଥିଲ ସେ ବର୍ତ୍ତମାନ କଣ କରିବାକୁ ଭାବୁଛି ଜାଣିଲଣି ?

କୈକେୟୀ ମା’ କାଇଦା କରି ତମକୁ ବଣକୁ ତଡ଼ିଲେ । ଏବେ ମା’ପୁଅ ମିଳି ତମ ଜୀବନ ନେବାକୁ ପାଞ୍ଚ କରି ସାରିଲେଣି । ଚଉଦବର୍ଷ ପରେ ତମେ ଅଯୋଧ୍ୟା ଫେରିଥିଲେ କୁଳ ନିୟମ ଅନୁସାରେ ତମେ ସିଂହାସନରେ ବସିଥା’ନ୍ତ । ସେଯାଏ ଆଉ କଥା ସିବନାହିଁ । ଭରତ ସୈନ୍ୟସାମନ୍ତ ଧରି ଆସିଗଲାଣି । ଭାବୁଛି ତମକୁ ଏଇ ଚିତ୍ରକୂଟରେ ଖତମ କରି ନିର୍ଦ୍ଦ୍ୱନ୍ଦ୍ୱରେ ରାଜଗାଦି ଭୋଗ କରିବ । ଏଥିପାଇଁ ତମର ସମ୍ମତି କଣ କହିଲ ?

ରାମଚନ୍ଦ୍ର ଭରତ ଆଗମନ କଥା ଶୁଣି ଆନନ୍ଦରେ ଅଧୀର ହୋଇପଡ଼ିଲେ । କହିଲେ ଲକ୍ଷ୍ମଣ ! ଭରତ ମୋର ସାନ ଭାଇ ।

ମତେ ଦେଖା କରିବାକୁ ଆସିଥିବ । ତା'ପ୍ରତି ଖରାପ ଧାରଣା କରୁଛ କାହିଁକି ? ସେ ପରା ମୋ ଭାଇ ! ମତେ ମାରିବାକୁ ତା ହାତ ଉଠିବ କିପରି ? ଭରତ ସେପରି ଧରଣର ଲୋକ ନୁହେଁ । ତାକୁ ତମେ ଅବିଶ୍ୱାସ କରୁଛ କାହିଁକି ? ପିତୃସତ୍ୟ ପାଳନ କରି ମୁଁ ବନବାସ କରିବାକୁ ଆସିଲି । ଏଥିରେ ଭରତର କିଛି ଦୋଷ ନାହିଁ । ଅଯୋଧ୍ୟାରେ ମତେ ନ ଦେଖି ଦୁଃଖ ଅନୁଭବ କରିଥିବ । ସେଇ ଦୁଃଖର ଉପଶମ ପାଇଁ ସେ ଆସୁଛି ।

ରାମଚନ୍ଦ୍ର ଟିକିଏ ମଉନ ରହିଲେ । ପରେ ଲକ୍ଷ୍ମଣଙ୍କୁ ପାଖକୁ ଡାକିଲେ । ପାଖରେ ବସାଇ କହିଲେ—ଲକ୍ଷ୍ମଣ, ଭରତ ମୋ ସାନ ଭାଇ ହେଲେ ମଧ୍ୟ ବର୍ତ୍ତମାନ ସେ ଅଯୋଧ୍ୟାର ମହାମାନ୍ୟ ସମ୍ରାଟ । ତାକୁ ଉପଯୁକ୍ତ ସମ୍ମାନ ଦେବା ଉଚିତ । ଯଥାଯୋଗ୍ୟ ସତ୍କାର କରିବା ଉଚିତ । ସେଥିପାଇଁ ତମେ ଶୀଘ୍ର ଆୟୋଜନ କର ।

ଲକ୍ଷ୍ମଣଙ୍କ ମନରେ ରାଗ ନିଆଁଟା କୁହୁଳୁଥିଲା । ସେ କହିଲେ—ଭାଇ, ତମେତ ମଣିଷ ନୁହଁ ଦେବତା । ତମ ମନରେ ଛଳକପଟ ନାହିଁ କି ରାଗ ଅହଙ୍କାର ନାହିଁ । ଭରତ ତମର ସାନ ଭାଇ ହୋଇଥିଲେ ସିଂହାସନରେ ବସି ନ ଥା'ନ୍ତା । ଅଯୋଧ୍ୟା ରାଜବଂଶର ପରମ୍ପରା ଅନୁସାରେ ବଡ଼ ଭାଇ ରାଜା ହେବା କଥା । ରାଜସିଂହାସନ ଲୋଭରେ ଭରତ ସବୁକଥା ଭୁଲି ଯାଇଛନ୍ତି । ରାଜା ହେଲା ପରେ ନିଜର ଭବିଷ୍ୟତ ଚିନ୍ତାକରି ଛୁଟିଆସିଛନ୍ତି ଚିତ୍ରକୂଟ । ଭବିଷ୍ୟତର ବାଧା ଶେଷ କରିଦେବାକୁ । ନିଷ୍କଣ୍ଟକ ସିଂହାସନ ଭୋଗ କରିବାକୁ, ସୈନ୍ୟସାମନ୍ତ ଓ ଅସ୍ତ୍ରଶସ୍ତ୍ର ଧରି ଛୁଟି ଆସୁଛନ୍ତି ।

ମୁଁ ନୀରବ ହୋଇ ରହିପାରିବ ନାହିଁ । ଏକଲା ମୁଁ ଏଇଠି ଠିଆହୋଇ ସମସ୍ତ ସୈନ୍ୟମାନଙ୍କୁ ମାରି ଉଡ଼ାଇ ଦେବ । ଭରତର ଗର୍ବ ଅହଙ୍କାର ଖର୍ବ କରିଦେବ । ସେ ଭାବିଛି ରାମ ଏକଲା ଅଛନ୍ତି । ଅତ୍ୟନ୍ତ ଆକ୍ରମଣ କରି ତାର ପଥ ପରିଷ୍କାର କରିଦେବ । ତା ହୋଇପାରିବ ନାହିଁ । ଲକ୍ଷ୍ମଣ ବଞ୍ଚିଥିବା ପର୍ଯ୍ୟନ୍ତ ରାମଚନ୍ଦ୍ରଙ୍କ ଅଙ୍ଗରେ ଧୂଳି କଣାଟିଏ କେହି ପକାଇ ପାରିବେ ନାହିଁ ।

ଲକ୍ଷ୍ମଣଙ୍କ ମନରେ ଭରତଙ୍କ ପ୍ରତି ଘୋର ସନ୍ଦେହ ଜାତ ହୋଇଥିଲା । ତାଙ୍କ ଛାତିତଳେ ଭୟଙ୍କର କ୍ରୋଧ ଅଗ୍ନି ଜଳି ଉଠୁଥିଲା । ସେ ଜନକନନ୍ଦିନୀ ସୀତାଙ୍କୁ ଲକ୍ଷ୍ୟକରି କହିଲେ— ଭାଉଜ, ଭାଇଙ୍କୁ ନେଇ କୁଡ଼ିଆ ଭିତରକୁ ଯାଅ । ମୁଁ କୁଡ଼ିଆ ବାହାରେ ରହିଲି । ଭରତକୁ ଆଜି ଉଚିତ୍ ଶିକ୍ଷା ନ ଦେଇ ଛାଡ଼ିବ ନାହିଁ ।

ଲକ୍ଷ୍ମଣଙ୍କ ତୁଣ୍ଡରୁ କଥା ସରୁ ନ ସରୁଣୁ ଭରତ ଆସି ପହଞ୍ଚି ଗଲେ । ଲମ୍ବିହୋଇ ରାମଚନ୍ଦ୍ରଙ୍କ ପାଦ ତଳେ ପଡ଼ିଗଲେ । ରାମଚନ୍ଦ୍ର ଭରତଙ୍କୁ ଉଠାଇ ନେଇ କୋଳ କଲେ । ଭରତ କହିଁ-କହିଁ ହୋଇ କାନ୍ଦୁଥାନ୍ତି । ଆଖିରୁ ଧାର ଧାର ଲୁହ ବହି ଯାଉଥାଏ ।

ଭରତଙ୍କ ଦେହରେ ଜଟା କୌପୁନୀ ଆଖିରେ ଲୁହଦେଖି ରାମଚନ୍ଦ୍ର ଅଥୟ ହୋଇ ପଡ଼ିଲେ । କହିଲେ—ଭରତ, ତୋର କ'ଣ ହେଲା ? ଏପରି ଦୁଃଖ କରୁଛୁ କାହିଁକି ?

ଭରତ ହାତଯୋଡ଼ି କହିଲେ ଭାଇ ! ତମେ ରାଜବେଷ ହୋଇ ବଣକୁ ଚାଲିଆସିଲ । ଅଯୋଧ୍ୟାପୁରର ସୁଖଶାନ୍ତି ଉଜୁଡ଼ି ଗଲାଣି । ସମସ୍ତଙ୍କ ଆଖିରୁ ଲୁହ ଝରୁଛି । ଚାରିଆଡ଼େ ଗଭୀର କୋହ ଉଠୁଛି । ତମେ ରାଜ ସିଂହାସନରେ ନ ବସିଲେ ରାଜ୍ୟ ଛାରଖାର ହୋଇଯିବ । ମୋ ମାଆ କୈକେୟୀ ମନ୍ଥରା ବୁଦ୍ଧିରେ ପଡ଼ି ସବୁ ସତ୍ୟାନାଶ କରିଦେଲା । ତମେ ତାକୁ କ୍ଷମା କରିଦିଅ । ତା' କଥା ଆଉ ମନରେ ଧରନା । ତମେ ବଡ଼ ଭାଇ । ରାଜ୍ୟର ମଉଡ଼ମଣି । ତମେ ସିଂହାସନରେ ବସିବା ଲୋକ । ରାଜଗାଦି ଛାଡ଼ିଦେଇ ବଣକୁ ଚାଲିଆସିଲ କିପରି ? ମାଆ ବର ମାଗିଦେଲା ବୋଲି କ'ଣ ରାଜାହେବ । ତାହା ହୋଇପାରିବ ନାହିଁ । ତମେ ଅଯୋଧ୍ୟା ଫେରିଚାଲ । ତମେ ନ ଗଲେ ମୁଁ ବି ଘରକୁ ଫେରିବି ନାହିଁ । ଏଇଠି ଅଖିଆଅପିଆ ବସିରହିବି । ବାପା ତ ତମକୁ ଝୁରିଝୁରି ମଲେ । ମୁଁ ବି ଏଇଠି ମରିବି ।

ରାମଚନ୍ଦ୍ର ଭରତଙ୍କର ନିର୍ମଳ ହୃଦୟର ଭାବ ବୁଝିପାରିଲେ । କହିଲେ– ଭରତ, ତୋ ମନଭାବ ମତେ ଅଜଣା ନାହିଁ । ମତେ ପିତୃସତ୍ୟ ପାଳନ କରି ମୁଁ ଚଉଦ ବର୍ଷ ବନବାସ କରିବାକୁ ଆସିଛି । ଚଉଦ ବର୍ଷ ନ ପୂରିଲେ ମୁଁ କେବେହେଲେ ଅଯୋଧ୍ୟା ଯାଇପାରିବି ନାହିଁ । ତୁ ମୋତେ ସେଥିପାଇଁ ବାଧ କରନା । ପିତାଙ୍କ ସତ୍ୟ ପାଳନ କରି ତୁ ଅଯୋଧ୍ୟା ରାଜ୍ୟ ଶାସନ କର ।

ଭରତ ଭଲକରି ବୁଝିପାରିଲେ ଚଉଦ ବର୍ଷ ନ ପୂରିଲେ ରାମଚନ୍ଦ୍ର ଅଯୋଧ୍ୟା ଫେରିବେ ନାହିଁ । ତାହାହେଲେ ସେ ପର୍ଯ୍ୟନ୍ତ ଅଯୋଧ୍ୟାରେ ରାଜା ହେବ କିଏ ? ଠିକଏ ଭାବି ଭରତ

କହିଲେ—ଭାଇ, ତମେ ଯଦି ଅଯୋଧ ନ ଯିବ ମତେ ତମ କଠଉ ଦୁଇଟି ଦିଅ । ସେଇ କଠଉ ହେବେ ଅଯୋଧ୍ୟାର ରାଜା । ରାଜ-ସିଂହାସନରେ ତମ କଠଉ ଥୋଇ ମୁଁ ଶାସନକାର୍ଯ୍ୟ ଚଳାଇବି । ଭାଇ, ତୁମକୁ ମୋ ରାଣ ରହିଲା—ଚଉଦ ବର୍ଷ ପୂରିଗଲେ ତମେ ନିଶ୍ଚୟ ଅଯୋଧ ଯିବ । ନହେଲେ ଡେରିହେଲେ ମୁଁ ନିଆଁରେ ପଶି ମରିବି ।

ରାମଚନ୍ଦ୍ର ହସିହସି ଭରତକୁ ନିଜର କଠଉ ହଳକ ଦେଲେ । କଠଉ ନେଇ ଭରତ ଅଯୋଧ୍ୟା ଫେରିଗଲେ ।

ଏସବୁ କଥା ନୀରବ ହୋଇ ଦେଖୁଥିଲେ ଲକ୍ଷ୍ମଣ । ରାମଚନ୍ଦ୍ର—କହିଲେ, ଲକ୍ଷ୍ମଣ କ'ଣ ଭାବୁଛ କି ? ଲକ୍ଷ୍ମଣ ହାତ-ଯୋଡ଼ି କହିଲେ—ଭାଇ, ଭରତ ପ୍ରତି ମୋର ଘୋର ସନ୍ଦେହ ଉପୁଜିଥିଲା ; କିନ୍ତୁ ଯାହା ଦେଖିଲି ସେଥିରେ ମୋର ମନ ଭରି ଧରିଗଲାଣି । ମଣିଷ ଚିହ୍ନିବାରେ ମୋର ଅଭିଜ୍ଞତା କେତେ କମ୍ ସେଇକଥା ମୁଁ ଭାବୁଛି ।

ରାମଚନ୍ଦ୍ର ଆଉ କିଛି କହିଲେ ନାହିଁ । ମୃତ ପିତା ଦଶରଥଙ୍କ ଉଦ୍ଦେଶ୍ୟରେ ଜଳ ତର୍ପଣ କରିବା ପାଇଁ ଗଙ୍ଗା ନଦୀକୁ ବାହାରିଗଲେ ।

ରାମଚନ୍ଦ୍ର ଚିତ୍ରକୂଟରେ ମାତ୍ର ଛଅ ମାସ ରହି ଦଣ୍ଡକାରଣ୍ୟ ଗଲେ । ଦଣ୍ଡକାରଣ୍ୟରେ ବିଭିନ୍ନ ଋଷି ଆଶ୍ରମ ବୁଲି ପଞ୍ଚବଟୀରେ ପହଞ୍ଚିଲେ । ପଞ୍ଚବଟୀର ପ୍ରାକୃତିକ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ସେହି ସ୍ଥାନରେ ରହିବାକୁ ରାମଚନ୍ଦ୍ର ମନ ବଳାଇଲେ । ଲକ୍ଷ୍ମଣଙ୍କୁ ଡାକି କହିଲେ—ଆଉ ଏଣେତେଣେ ବୁଲିବା ନାହିଁ ।

ବନବାସ ଶେଷଯାଏ ଏଇଠି ରହିବା । ପତ୍ର କୁଡ଼ିଆଟିଏ ଶୀଘ୍ର ତୋଳିଦେ' ।

ବଡ଼ ଭାଇଙ୍କ ଆଦେଶ ପାଇ ଲକ୍ଷ୍ମଣ ବଣ ଭିତରୁ ଶାଳ ଗଛର ଡାଳ ହାଣି ଆଣିଲେ । ଖୁଣ୍ଟ ପୋତି ରୁଅ ପକାଇଲେ । ବତା ପକାଇ ବଣ୍ଡୁଆ ଲଟାରେ ବନ୍ଧାବନ୍ଧ କରିଦେଲେ । ତା' ପରେ ଶାଳ, ପିଆଶାଳ ପତ୍ର ଆଣି ଛୁଆଣି କରିଦେଲେ । କୁଡ଼ିଆ ଚାରିପାଖ ଅଗଣା ତାଞ୍ଛି ସଫାସୁତୁରା କରିଦେଲେ । କୁଡ଼ିଆ ଭିତର ଲିପାପୋଛା କରି ଚକ୍‌କଣ କରିସାରି କହିଲେ—ଭାଉଜ, ଏବେ ଦେଖିଲ ତମ ମନକୁ ଯାଉଛି ନା ନାହିଁ । ଆଉ ଯଦି କାମ ବାକିଥାଏ ବତେଇଦେଲେ କରିଦେବି ।

ରାମଚନ୍ଦ୍ର ଓ ସୀତାଦେବୀ କୁଡ଼ିଆ ବାହାର ଓ ଭିତର ଗଠନ ଦେଖି ଖୁସି ହୋଇଗଲେ । କୁଡ଼ିଆ ଭିତରେ ପତ୍ର ଆସନ ବିଛା ହୋଇଥିଲା । ରାମଚନ୍ଦ୍ର ଆସନ ଗ୍ରହଣ କରି ଭାବିଲେ—କାହିଁ ଅଯୋଧ୍ୟାର ରାଜପୁରୀ ଆଉ କାହିଁ ପଞ୍ଚବଟୀର ପତ୍ରକୁଟୀର । ତେବେ ଏଠି ଯେଉଁ ଆନନ୍ଦ ମିଳୁଛି ତାହା ଅନ୍ୟଠି ମିଳିବା ମୁସ୍କିଲ । ମଣିଷ ତ ପରିସ୍ଥିତିର ଦାସ । ପରିସ୍ଥିତି ସହିତ ଖାପ ଖୁଆଇ ଚଳିବା ହେଲା ଜୀବନର ଆନନ୍ଦ ।

ସୀତାଦେବୀ କହିଲେ— ଲକ୍ଷ୍ମଣ, ଆମପାଇଁ ତ ବଢ଼ିଆଟିଏ କୁଡ଼ିଆ କରିଦେଲ । ତମେ ରହିବ କେଉଁଠି ? ତମ ରହିବା ପାଇଁ ଆଉ ବଢ଼ିଆଟିଏ କୁଟୀର କଲ ନାହିଁ କାହିଁକି । ହଉହଉ ଆଜି ବହୁତ କାମକଲଣି । ଟିକିଏ ବିଶ୍ରାମ କର । କାଲି ନିଜପାଇଁ ଆଉ ବଢ଼ିଆଏ କୁଡ଼ିଆ କରିଦେବ ।

ଲକ୍ଷ୍ମଣ କହିଲେ—ଭାଉଜ, ତମେ ଭଲରେ ରହିଲେ ମୋର ଭଲ । ମୋ ପାଇଁ କୁଡ଼ିଆ କରିବା ଦରକାର ନାହିଁ । ବନଗଛ ମୁଁ ଏହି କୁଡ଼ିଆ ବାହାରେ ଜଗୁଆଳି କାମ କରିବି । ନିଶ୍ଚିନ୍ତ ହୋଇ ଶୋଇବାକୁ ମୋର ବେଳ କାହିଁ ?

ବଣୁଆ ଜାଗା । ବାଘ ଭାଲୁଙ୍କ ଭୟ ରହିଛି । ସେଥିରେ ପୁଣି ମାୟାବୀ ରାକ୍ଷସଙ୍କ ଆକ୍ରମଣର ଭୟ ଅଛି । ଆଜି ଗୋଟିଏ କୁଡ଼ିଆ କରି ନିଶ୍ଚିନ୍ତରେ ଶୋଇଲେ ଚଳିବ କିପରି ? ମୋ ପାଇଁ କିଛି ଚିନ୍ତା କରନା । କୁଡ଼ିଆ ବାହାରେ ରହି ମୁଁ ଭାଇ ଭାଉଜଙ୍କ ସେବାରେ ବନ କଟେଇଦେବି ।

ରାମଚନ୍ଦ୍ର ହସିଲେ । କହିଲେ—ସୀତା ! ଲକ୍ଷ୍ମଣ କଥା ଶୁଣିଲ ତ ! ଭାଗ୍ୟରେ ଥିଲେ ଏମିତିକା ଭାଇ ମିଳନ୍ତି । ଅଯୋଧ୍ୟାରେ ଥିଲାବେଳେ ବାପା ମୋର ସମସ୍ତ ଦାୟିତ୍ୱ ବହନ କରୁଥିଲେ । ସେ ଚାଲିଗଲେ । ବର୍ତ୍ତମାନ ତାଙ୍କ ସ୍ଥାନ ପୂରଣ କରିଛି ଲକ୍ଷ୍ମଣ । ବଣରୁ ଫଳମୂଳ ଆଣି ଆମକୁ ଖୋଉଛି । ନଈ, ଝରଣାରୁ ପାଣି ଆଣି ଯୋଗେଇଛି । ରାତି ଅନିଦ୍ରା ହୋଇ ଆମକୁ ଜଗିବସୁଛି । ତା'ର ପାଇଁ ମୁଁ ସବୁ ଦୁଃଖ ଭୁଲିଯାଉଛି ।

ଏହି ସମୟରେ ପକ୍ଷୀରାଜ ଜଟାୟୁ ଉଡ଼ି ଯାଉଥିଲା । ରାମଚନ୍ଦ୍ର, ଲକ୍ଷ୍ମଣ ଓ ସୀତାଙ୍କୁ ଦେଖି ପାଖ ଗଛ ଉପରେ ବସି-ଗଲା । କହିଲା—ବାପା ରାମଚନ୍ଦ୍ର ! ମତେ ଚିହ୍ନି ପାରୁଛ । ତମ କଥାବାର୍ତ୍ତାରୁ ମୁଁ ତମ ପରିଚୟ ଜାଣିପାରିଲିଣି । ତମ ବାପା ଦଶରଥ ମହାରାଜା ମୋର ମିତ ଥିଲେ । ସେ ମରିଯାଇ ସ୍ୱର୍ଗପୁରରେ ରହିଲେଣି । ମୁଁ ଏଇଠି ଘାଣ୍ଟିଗୋଳେଇ ହଉଛି ।

ବାପାଙ୍କ ସତ୍ୟ ରକ୍ଷାକରି ତମେ ବଣକୁ ଆସିଛ । ଏଠି କୁଡ଼ିଆ କରି ରହିଲ । ଭଲ ହେଲା । ପଞ୍ଚବଟୀଟା ଉତ୍ତମ ସ୍ଥାନ । ଫଳମୂଳର ଅଭାବ ହେବ ନାହିଁ । ଅଳ୍ପଦୂରରେ ଗୋଦାବରୀ ନଈ ବହୁଛି । ସବୁ ପ୍ରକାର ସୁବିଧା ଅଛି । କିନ୍ତୁ ବାପା, ଏଠୁ ଅଳ୍ପ ଦୂରରେ ଜନସ୍ଥାନ । ଦୁଷ୍ଟ ରାକ୍ଷସଙ୍କ ବସା । ଟିକେ ହୁସିଆର ହୋଇ ଚଳୁଥିବ । ମା' ସୀତାଙ୍କୁ ଏକଲା କୁଡ଼ିଆରେ ଛାଡ଼ିବ ନାହିଁ । ହଉ, ମୁଁ ଏଇ ବଣରେ ବସାକରି ରହୁଛି । ବିପଦ ଆପଦରେ ମୁଁ ବି ତମକୁ ସାହାଯ୍ୟ କରିବି । ଭୟ କରନା । ଆନନ୍ଦରେ ରୁହ ।

ଏହାକହି ଜଟାୟୁ ତା' ବସାକୁ ଚାଲିଗଲା । ଲକ୍ଷ୍ମଣ ବଣରୁ ଫଳ ଆଣିବାକୁ ବାହାରିଗଲେ ।

ପଞ୍ଚବଟୀରେ ରାମ, ସୀତା ଓ ଲକ୍ଷ୍ମଣ ଅତି ଆନନ୍ଦରେ କେତେମାସ କଟାଇଦେଲେ । ସୀତାଦେବୀ ରାମଚନ୍ଦ୍ରଙ୍କ ସହିତ ବୁଲିବୁଲି କରି ଅରଣ୍ୟଶୋଭା ଦେଖୁଥିଲେ । ବନ ଫୁଲରେ ହାର ଗୁନ୍ଥି ରାମଚନ୍ଦ୍ରଙ୍କ ଗଳାରେ ଲମ୍ବେଇ ଦେଉଥିଲେ । ରାମଚନ୍ଦ୍ର ହସିହସି ସୀତାଙ୍କ କବରୀରେ ମଧ୍ୟ ଫୁଲ ଖୋସି ଦେଉଥିଲେ । ଆଲିଙ୍ଗନ କରି କହୁଥିଲେ—ସୀତା, ଏ ବନବାସୀ ଜୀବନ ତମକୁ କେମିତି ଲାଗୁଛି ?

"ଖୁରିଭଲ"—ହସିହସି ସୀତା ଉତ୍ତର ଦେଉଥିଲେ । ଏ ସୁଖ, ଏ ଆନନ୍ଦ କଣ ଅଯୋଧ୍ୟାରେ ମିଳିଥାନ୍ତା !! ପ୍ରକୃତିର ମଧୁର ପରିବେଶ ମଧ୍ୟରେ ଯୋଉ ଶାନ୍ତି ଲୁଚିରହିଛି ତାହା ଧନ ଦୌଲତଭିତର ନଗରରେ ନାହିଁ । ଏଥିପାଇଁ ଋଷିମୁନି-

ମାନେ ଗହନ ଅରଣ୍ୟରେ ଆଶ୍ରମକରି ରହିବାକୁ ପସନ୍ଦ କରିଥା'ନ୍ତି । ଅଯୋଧ୍ୟାରେ ତମେ ରଜା ହୋଇଥିଲେ ମୁଁ ରାଣୀ ହୋଇଥାନ୍ତି । ତଥାପି ଆସି ମୋର'ତ କିଛି କ୍ଷତି ହୋଇନାହିଁ । ଏ ବିରାଟ ବନଭୂମିର ତମେ ହୋଇଛ ରଜା । ମୁଁ ବି ହୋଇଛି ରାଣୀ । ଚାଲ ଆଜି ଯେସିଏ ବୁଲିଆସିବା ।

ରାମଚନ୍ଦ୍ର ସୀତାଙ୍କ ଗଣ୍ଡ ଚୁମ୍ବନ କରି କହିଲେ—ଜାନକୀ, ଶିବଧନୁ ଭାଙ୍ଗି ମୁଁ ତମକୁ ପାଇଛି । ତମେ ମୋର ଏଇ ମଧୁର ପ୍ରେମ ସଂସାର ଭାଙ୍ଗି କୁଆଡେ ଖସି ପଳେଇବ ନାହିଁ ତ ?

ସୀତା ରାମଚନ୍ଦ୍ରଙ୍କ କୋଳରେ ମୁହଁ ଲୁଚେଇ କହିଲେ— ପ୍ରିୟତମ, ଯିବି ଆଉ କୁଆଡେ । ତମ ପାଦରେ ତ ଜୀବନ ବିକି ଦେଇଛି । ତମେ କଣ ମତେ ଏଡ଼େଇ ଦେବାକୁ ଚାହୁଁଛ ?

ରାମଚନ୍ଦ୍ର ହସିହସି ସୀତାଙ୍କୁ ଗ୍ରୀବା ଉପରେ ଭିଡ଼ି ଧରିଲେ । କହିଲେ—ସୀତା ସେପରି କଥା ମୁହଁରେ ଧରନା । ଆମର ଏଇ ପ୍ରେମପୂର୍ଣ୍ଣ ଜୀବନ ନୀର କ୍ଷୀରର ପ୍ରୀତିକୁ ଟପିଗଲଣି । ତମକୁ ଛାଡ଼ି ମୁଁ ମୁହୂର୍ତ୍ତଟିଏ ବଞ୍ଚିପାରିବି ନାହିଁ । ତମକୁ ସାଙ୍ଗରେ ଆଣିବାକୁ ମନା କରୁଥିଲି । ଆଜି ମୁଁ ଭାବୁଛି—ତମକୁ ଛାଡ଼ି ବଣରେ ରହିଥା'ନ୍ତି କିପରି ? ଦେଖିଲଣି—ଜାନକୀ, ସବୁଜ ପ୍ରକୃତି ହସୁଛି, ଲତା ଗହଳରେ ଫୁଲମାନେ ହସିହସି ମୁହଁଲୁଚାଇ ଦେଉଛନ୍ତି । ଚପଳ ପବନ ବୃକ୍ଷଲତାର କଅଁଳ ପତ୍ର ସାଙ୍ଗରେ ଲୁଚକାଳି ଖେଳୁଛି । ଆମେ ଟିକେ ଲୁଚକାଳି ଖେଳନ୍ତେ ନାହିଁ !

ସୀତାଦେବୀ ହସିଲେ । କହିଲେ—କ'ଣ ପିଲାଦିନ କଥା ମନେ-ପଡ଼ୁଛି । ସେଦିନ ଗଲାଣି । ଏବେ ଲୁଚିବ କିଏ ଆଉ ଖୋଜିବ

କିଏ କହିଲା ? ସବୁଜ ଲତା ଗହଳରେ ମୁଁ ଲୁଚି ରହିବି ଆଉ ତମେ ସାରା ବଣଟା ବୁଲି ଖୋଜାଖୋଜି ନସ୍ତାନାବୁଦ ହେବ । ଏଇ କଥା ମନରେ ଭାବୁଛ ? ସେକଥା ହେବ କେମିତି ? ତମ ପାଖରୁ ମୁହୂର୍ତ୍ତେ ଅନ୍ତର ହୋଇ ପାରିବି ନାହିଁ । ତମ ଦେହ ମନ ଆଉ ପ୍ରାଣରେ ମୋ ଦେହ, ମନ ଓ ପ୍ରାଣ ସବୁଦିନ ପାଇଁ ମିଶି-ଯାଇଛି । ଅଲଗା ହେବି କପରି, ପୁଣି ପାଖଛଡ଼ା ହୋଇ ଲୁଚିବି ବା କପରି ? ପାଦ ପାଖରେ ବନ୍ଧାପଡ଼ିଥିବା ଲୋକକୁ ତମେ ଖୋଜି ବୁଲିବ କାହିଁକି ? ସେକଥା ଛାଡ଼, ଚାଲ ହାତ ଧରାଧରି ହୋଇ ଗହନ ବନରେ ବୁଲିଆସିବା ।

ରାମଚନ୍ଦ୍ର ହସିହସି ସୀତାଙ୍କ ହାତ ଧରିପକାଇଲେ । ବନ ଗହନରେ ମନଇଚ୍ଛା ବୁଲିବୁଲି କରି ପରେ କୁଡ଼ିଆକୁ ଫେରିଗଲେ ।

ଲକ୍ଷ୍ମଣ କୁଡ଼ିଆରେ ଭାଇ ଭାଉଜଙ୍କ ପଥ ଚାହିଁ ବସିଥିଲେ । ମାଟି କଳସରେ ପାଣିଆଣି ଦୁଇଜଣଙ୍କ ପାଦ ଧୋଇଦେଲେ । ବଳ୍କଳରେ ପାଦ ପୋଛିଦେଇ ଆସନରେ ବସାଇଲେ । କହିଲେ - ଭାଇ, ଆଜି ଏତେ ବିଳମ୍ବ ହେଲା କାହିଁକି ? କୋଉଠି ତ ଫଳ କଣ୍ଟିଏ ଗଛରୁ ତୋଳି ପାଟିରେ ଦେଇ ନ ଥିବ । ଭୋକ ଲାଗିଲା ନାହିଁ ତମକୁ ? ଭାଉଜ ଆଜି ମଉଜ ଗପଟିଏ ଆରମ୍ଭ କରିଦେଇ ଥିଲେ କି ? ହଉ ହଉ, ଭୋକ କରିବଣି, ଆଗେ ଖିଆ-ପିଆ କରିନେଇ ଦେଲ ।

ସୀତାଦେବୀ ଅଳ୍ପ ଟିକିଏ ହସିଦେଇ କହିଲେ—ଲକ୍ଷ୍ମଣ ଦେଖ, ବଣରେ ଫଳ ଅଭାବ ନାହିଁ । ତୋଳି ଖାଇବାକୁ ଆମେ ବି ହାତ ପାଇଛୁ ; କିନ୍ତୁ ତମ ହାତରୁ କଷା ଫଳ ଖାଇଲେ ଯେମିତି

ବଢ଼ିଆ ଲାଗେ, ସେ ସ୍ୱାଦ ବଣର ମିଠା ଫଳରେ ନ ଥାଏ । ସେଇଥିପାଇଁ ଆମେ ଦୁ'ଜଣ ତମ ହାତକୁ ଅନେଇଛୁ । ହଉ ଆଣ, ଭାଇଙ୍କୁ ଡେରି ହେଲାଣି । ତମେ ଖାଇସାରିଛ ଲକ୍ଷ୍ମଣ ?

ଲକ୍ଷ୍ମଣ ହସ ଖେଳେଇ କହିଲେ—ଭାଉଜ, ଆଗେ ଠାକୁର ଠାକୁରାଣୀଙ୍କୁ ଭୋଗ ଦିଆଯାଏ ନା ସେବକ ଆଗେ ଖାଇସାରି ତଳୁଧରେ କହିଲ ? ଏ ଶିକ୍ଷାଟା ପରା ତମଠାରୁ ପାଇଛୁ । ଅଯୋଧ୍ୟାରେ ଥିଲାବେଳେ ଭାଇଙ୍କୁ ଆଗେ ଖୋଇପେଇ ଶାନ୍ତ ନ କରି କେଉଁଦିନ ତମେ ଠାଆରେ ବସିଥିଲ ? ଠାକୁର ଠାକୁରାଣୀଙ୍କ ମନ ଶାନ୍ତ ରହିଲେ ପୂଜାରୀର ଚିନ୍ତା କଣ ? ଆପଣାଛୁଏଁ ପେଟ ପୂରିଯାଏ । ଖାଇବା କ'ଣ ଦରକାର ? କିନ୍ତୁ ଭାଉଜ କଥାଟା କହି ରଖୁଛି, ଅଯୋଧ୍ୟା ଫେରିଲେ ଏକଥା ଆଉ ଚଳିବ ନାହିଁ । ରାନ୍ଧିବାଢ଼ି ସାରି ମତେ ଆଗେ ପରଷିବ । ଟିକେ ବ୍ୟତିକ୍ରମ ହେଲେ ମାଟିହାଣ୍ଡି ବାଡ଼େଇ ଭାଙ୍ଗିଦେବି ।

ରାମଚନ୍ଦ୍ର ହସିଉଠିଲେ । କହିଲେ— ଜାନକୀ, ମନେରଖିଲ ତ ! ଆଗେ ଲକ୍ଷ୍ମଣ କଥା ବୁଝିବ । ତା'ପରେ ଆଉ ଯାହା କରିବ ।

ରାତି ପାହିଲା । ସୂର୍ଯ୍ୟଦେବ ପୂର୍ବ ଦିଗରୁ ହସିହସି ନାଲି କିରଣ ଝରେଇଲେ । ଚଢ଼େଇମାନେ ଗଛଡାଳରେ ସ୍ୱର ଝଙ୍କାର କଲେ । ଧୀରଧୀର ହୋଇ ପବନ ବହୁଥିଲା । ସେହି ଧୀର ପବନରେ ସଜଫୁଟା ଫୁଲର ମଧୁର ବାସ୍ନା ଭାସି ଆସୁଥିଲା ।

ଲକ୍ଷ୍ମଣ ଧନୁଧରି କୁଟୀର ଦ୍ୱାରଦେଶରେ ବସିଥିଲେ । ଭାବୁଥିଲେ, କୈକେୟୀ ମା'ଙ୍କର ପଦେ କଥା ସବୁ ଓଲଟପାଲଟ

କରିଦେଲ । ସେତିକି ପାଳିଥିଲେ ରାମଚନ୍ଦ୍ର ରାଜା ହୋଇଥାନ୍ତେ । ତାହା ହୋଇପାରିଲା ନାହିଁ । ପିତୃସତ୍ୟ ପାଳନ କରି ବଣକୁ ଚାଲିଆସିଲେ । ଗଜଦନ୍ତ ପଲଙ୍କରେ ତୁଳିତଳ୍ପ ବିଛାଇ ଶୋଇବା ଲୋକ, ଆଜି ପଥକୁଡ଼ିଆରେ ଶାଳପତ୍ର ବିଛାଇ ଶୋଇଛନ୍ତି । ଲୋକେ କହନ୍ତି, ବିଧିର ବିଧାନ ଆନ କରି ହୁଏ-ନାହିଁ । ତାହାହେଲେ ବିଧାତା କ'ଣ ରାମଚନ୍ଦ୍ରଙ୍କ ପାଇଁ ଏଇ ବ୍ୟବସ୍ଥା କରିଛନ୍ତି ? ନା ଏକଥା ଠିକ୍ ନୁହେଁ । ମଣିଷ ଯାହା କରେ ସେହି ଫଳ ଭୋଗ କରେ । ନିଜ ଦୋଷ ଛଡେଇବାକୁ ବିଧାତା ମୁଣ୍ଡରେ ସବୁ ଦୋଷ ଲଦିଦିଏ ।

କୈକେୟୀ ମା'ଙ୍କ ମନରେ ରାଜମାତା ହେବାର ଲୋଭ ରହିଥିଲା । ସେଥିପାଇଁ ସେ ବେଳକାଳ ଦେଖି ବରଟା ମାଗି-ଦେଲେ । ଭରତଙ୍କୁ ରାଜାକରି ସେ ରାଜମାତାର ସୌଭାଗ୍ୟ ଅର୍ଜନ କରିଥାନ୍ତେ । ଭରତ ଭାଇ ସିନା ମାନିଲେ ନାହିଁ । ତା' ନ ହେଲେ ତାଙ୍କର ଉଦ୍ଦେଶ୍ୟ ପୂରଣ ହୋଇ ଯାଇଥାନ୍ତା । ଏ ତ ତାଙ୍କ ବୁଦ୍ଧି ନୁହେଁ, ତାଙ୍କ ବାପାଙ୍କ ବୁଦ୍ଧି । କନ୍ୟାଦାନ କଲାବେଳେ ତାଙ୍କ ବାପା ଅଶ୍ୱପତି ସର୍ତ୍ତ ରଖିଥିଲେ କୈକେୟୀଙ୍କ ପୁଅ ଅଯୋଧ୍ୟା ରାଜସିଂହାସନ ମଣ୍ଡନ କରିବ । ବାପା ବି ତାଙ୍କ କଥାରେ ରାଜି ହୋଇ ଯାଇଥିଲେ । ଭରତ ବଡ଼ଭାଇ ହୋଇ-ଥିଲେ ଆଉ କିଛି ଅଡୁଆ ହୋଇ ନ ଥା'ନ୍ତା । ନିଶ୍ଚୟ ସେ ସିଂହାସନରେ ବସିଥାନ୍ତେ । ବାଟ ଝୁଅଙ୍କ ପାଞ୍ଚ ବିଗିଡ଼ିଗଲା । କୌଶଲ୍ୟା ମା'ଙ୍କ ଗର୍ଭରୁ ପ୍ରଥମେ ଜନ୍ମ ହେଲେ ଶ୍ରୀରାମ । ତାଙ୍କ ପରେ ଜନ୍ମ ହେଲେ ଭରତ । ବାପା ସୂର୍ଯ୍ୟବଂଶର ପରମ୍ପରା

ରକ୍ଷାକରି ବଡ଼ପୁଅ ରାମଚନ୍ଦ୍ରଙ୍କୁ ରାଜା କରିବାପାଇଁ ଅଭିଷେକ ଆୟୋଜନ କଲେ । ଅସଲବେଳେ କୁଜୀ ମନ୍ଥରା କୈକେୟୀ ମାଆଙ୍କୁ ପୂର୍ବ କଥାଟା ମନେପକାଇ ଦେଲା । ଯୋଉ କୈକେୟୀ ରାମଚନ୍ଦ୍ରଙ୍କୁ ନିଜପୁଅ ଭରତଠାରୁ ଅଧିକ ସ୍ନେହ କରୁଥିଲେ, ସେ ସ୍ୱାର୍ଥ ହାସଲପାଇଁ ବଦଳି ଗଲେ । ଭରତଙ୍କୁ ରାଜାକରି ରାଜମାତା ହେବା ଆଶାରେ ରାମଚନ୍ଦ୍ରଙ୍କୁ ଚୌଦ ବର୍ଷ ବନବାସରେ ପଠାଇବାର କୂଟବୁଦ୍ଧି ଖଞ୍ଜିଲେ ।

ଛାଡ଼ ଆଉ ସେ କଥା ଭାବି କିଛି ଲାଭ ନାହିଁ । ଗତସ୍ୟ ଶୋଚନା ନାସ୍ତି । କାଲିପରି ଚଉଦ ବର୍ଷ ପୂରିଯିବ । ପୁଣି ବଡ଼ଭାଇ ରାମଚନ୍ଦ୍ର ଅଯୋଧ୍ୟା ସିଂହାସନରେ ବସି ରାଜତ୍ୱ କରିବେ । ସୀତାଦେବୀ ହେବେ ମହାରାଣୀ । ଆଉ ମୁଁ ? ମୁଁ କଣ କରିବି । ମୁଁ ତ ରାମଚନ୍ଦ୍ରଙ୍କ ସେବାରେ ରହିଛି । ଯେତେବେଳେ ବି ତାଙ୍କର ସେବାକରି ଦିନ କଟେଇବି ।

ଗଛଡାଳରେ ସୂର୍ଯ୍ୟଦେବଙ୍କର ଉଜ୍ଜ୍ୱଳ କିରଣ ଅପୂର୍ବ ଶୋଭା ସୃଷ୍ଟି କରୁଥିଲା । ରାମଚନ୍ଦ୍ର ଶଯ୍ୟା ତ୍ୟାଗକରି ପ୍ରାତଃ-ବନ୍ଦନା ଗାଇଉଠିଲେ । ସୀତାଦେବୀ ଭକ୍ତିଭରା ହୃଦୟରେ ରାମଚନ୍ଦ୍ରଙ୍କ ପାଦପୂଜା କଲେ । ତା'ପରେ ଗୋଦାବରୀରେ ସ୍ନାନ କରିବାକୁ ବାହାରିଲେ । ତାଙ୍କ ପଛେପଛେ ସ୍ନାନ କରିବାକୁ ବାହାରିଲେ ରାମଚନ୍ଦ୍ର ।

ଗୋଦାବରୀ ନଦୀରେ ସ୍ନାନକରି ରାମ, ସୀତା ଫେରିଆସିଲେ । ସୀତାଦେବୀ ପାଖ ବଣରୁ ଫୁଲ ତୋଳିଆଣିଲେ । ରାମଚନ୍ଦ୍ର ଇଷ୍ଟପୂଜାରେ ଲାଗିପଡ଼ିଲେ । ପୂଜାପାଠ ପରେ ସୀତାଦେବୀ

ରାମଚନ୍ଦ୍ରଙ୍କ ପାଖରେ କିଛି ଫଳମୂଳ ବାଢ଼ିଦେଲେ । ଡାକିଲେ, ଲକ୍ଷ୍ମଣ ଫଳ ଆହାର କରିବ ଆସ ।

ଲକ୍ଷ୍ମଣ ଅଳ୍ପ ଟିକିଏ ହସିଦେଇ କହିଲେ—ଭାଉଜ, ତମେ ମୋ କଥା ଜମା ମନେ ରଖୁନା । କହୁଥିଲ ପରା ଅଯୋଧ୍ୟାକୁ ଗଲେ ଯାଇ ତମ ହାତ ପରଷା ଚାଖିବ । ଏଠି ମତେ ବ୍ୟସ୍ତ କରନା । ତମେ ଆଗେ ଖାଇଦିଅ । ମୋ ପାଇଁ କିଛି ଚିନ୍ତା କରନା ।

ରାମଚନ୍ଦ୍ର ଫଳ ଆହାର କରିସାରିଥିଲେ । ସୀତାଦେବୀ ଅଳ୍ପଅଳ୍ପ କିଛି ଫଳ ଆହାର କରି ଫୁଲଗୁଛି ବସିଲେ । ରାମଚନ୍ଦ୍ର କୁଟୀର ବାହାରେ ବୁଲିବୁଲି କରି ବନଶୋଭା ଦେଖୁଥିଲେ । ଏତିକିବେଳେ ପର୍ଣ୍ଣକୁଡ଼ିଆ ପାଖରେ ପହଞ୍ଚିଗଲା ସୂର୍ପଣଖା ।

ସୂର୍ପଣଖା ରାବଣର ଭଉଣୀ । ସେ ପଞ୍ଚବଟୀରୁ ଅଳ୍ପଦୂର ଜନ-ସ୍ଥାନରେ ରହୁଥିଲା । ଜନସ୍ଥାନରେ ବହୁତ ରାକ୍ଷସ ବାସ କରୁଥିଲେ । ରାବଣର ବିମାତା ପୁଅ ଖର ଥିଲା ଜନସ୍ଥାନର ରାଜା । ରାବଣର ସାହସ ପାଇ ଖର କାହାରିକୁ ଖାତିର କରୁ ନ ଥିଲା । ଦଣ୍ଡ-କାରଣ୍ୟରେ ଆଶ୍ରମକରି ରହିଥିବା ମୁନିଋଷିଙ୍କ ଉପରେ ଭୟଙ୍କର ଅତ୍ୟାଚାର କରୁଥିଲା । ସୂର୍ପଣଖା ମଧ୍ୟ ନିର୍ଭୟରେ ବଣସାରା ବୁଲୁଥିଲା ।

ସେଦିନ ସୂର୍ପଣଖା ରାମଚନ୍ଦ୍ରଙ୍କ ଦିବ୍ୟସୁନ୍ଦର ରୂପ ଦେଖି ଆଶ୍ଚର୍ଯ୍ୟ ହୋଇଗଲା । ଏପରି ସୁନ୍ଦର ପୁରୁଷ ସେ ଆଗରୁ କେବେ ଦେଖି ନ ଥିଲା । ଲାଜ ସରମ ଛାଡ଼ି ଶ୍ରୀରାମଙ୍କ ପାଖକୁ ଗଲା ଓ କହିଲା ତାଙ୍କୁ ବିଭା କରିବାକୁ କହିଲା ।

ରାମଚନ୍ଦ୍ର ସୂର୍ପଣଖାର ମନ୍ଦ ଉଦ୍ଦେଶ୍ୟ ବୁଝିପାରି କହିଲେ—ସୁନ୍ଦରୀ ! ମୁଁ ବିବାହ କରିଛି । ମୋ ସ୍ତ୍ରୀ ସୀତା ବି ମୋ ପାଖରେ ଅଛି । ମତେ ବିବାହ କଲେ ତମେ ସଉତୁଣୀ ଗଞ୍ଜଣା ସହିବ । ସେଇଟା ତମ ପକ୍ଷରେ ଭଲହେବ ନାହିଁ । ସେ ପାଖରେ ମୋ ସାନଭାଇ ଲକ୍ଷ୍ମଣ ଅଛି । ତାକୁ ବିବାହ କଲେ ସୁଖ ପାଇବ ।

ଲକ୍ଷ୍ମଣ କୁଡ଼ିଆ ପଛପାଖ ଫୁଲ ବଗିଚ୍ଚ ସଫା କରୁଥିଲେ । ସୂର୍ପଣଖା ତାଙ୍କ ପାଖକୁ ଗଲା । ବିଭାହେବାକୁ କହିଲା ।

ଲକ୍ଷ୍ମଣ କହିଲେ ସୁନ୍ଦରୀ ! ମୁଁ ତ ରାମଚନ୍ଦ୍ରଙ୍କ ଦାସ । ମତେ ବିଭାହେଲେ ତମେ ଦାସୀ ପଣରେ ରହିବ । ସୀତାଙ୍କ ପାଦ ଘଷିବ । ଲଙ୍କାରାଜା ରାବଣର ଭଉଣୀ ବୋଲି ପରିଚୟ ଦେଉଛ । ତମେ ରାଜାଙ୍କୁ ବିବାହ ନ କରି ରାଜାଙ୍କ ଚାକର ହାତଧରି ଚାକରାଣୀ ହେବାକୁ ମନ କରୁଛ କାହିଁକି ?

ସୂର୍ପଣଖା ବୁଝିଗଲା, ସୀତା ହେଉଛି ତା ପଥର କଣ୍ଟା । ସେଇଟାକୁ ମାରିଦେଲେ ରାମ ତାକୁ ନିଶ୍ଚୟ ବିଭାହେବେ । ଏପରି ବିଚାର କରି ସୀତାଙ୍କୁ ଗିଳିଦେବା ପାଇଁ କୁଡ଼ିଆ ଭିତରକୁ ଆଁ କରି ଦଉଡ଼ି ଗଲା । ସୀତା ବିକଳ ହୋଇ ଚିତ୍କାର କଲେ । ଲକ୍ଷ୍ମଣ ଦଉଡ଼ିଆସି ସୂର୍ପଣଖାର ନାକ, କାନ କାଟିଦେଲେ । ସୂର୍ପଣଖା ରଡ଼ି ଛାଡ଼ି ପଳେଇଲା ।

ସୂର୍ପଣଖା ଅପମାନର ପ୍ରତିଶୋଧ ନେବାକୁ ରାକ୍ଷସସେନା ସଜକରି ଖର ଦୂଷଣ ଦୁଇଭାଇ ଓ ତାଙ୍କ ମନ୍ତ୍ରୀ ତ୍ରିଶିର ରାକ୍ଷସ ଛୁଟି ଆସିଲେ । ରାମଚନ୍ଦ୍ରଙ୍କ ସହିତ ଲଢ଼େଇ କରି ସମସ୍ତେ ମଲେ ।

ତା’ ପରେ ଲଙ୍କାର ରଜା ରାବଣ ମାରୀଚ ରାକ୍ଷସକୁ ପଠାଇଲା । ମାରୀଚ ସୁନାର ହରିଣ ରୂପଧରି କୁଡ଼ିଆ ପାଖରେ ବୁଲିଲା । ତାକୁ ଧରି ଆଣିବାକୁ ସୀତା ରାମଚନ୍ଦ୍ରଙ୍କ ପାଖରେ ଅଳିକଲେ । ମାୟାମୃଗ ଧରିବା ପାଇଁ ରାମଚନ୍ଦ୍ର ଧନୁଶର ଧରି ଗୋଡ଼େଇଲେ । ମାରୀଚ ଦୂର ବଣକୁ ଦୌଡ଼ି ପଳେଇଲା । ରାମ ଶରରେ ମଲାବେଳେ “ଲକ୍ଷ୍ମଣ ରକ୍ଷାକର” ବୋଲି ଚିତ୍କାର କରି ଦେଲା ।

ସୀତାଦେବୀ ରାମଚନ୍ଦ୍ରଙ୍କୁ ବିପଦ ପଡ଼ିଲା ବୋଲି ଚିନ୍ତାକରି ଲକ୍ଷ୍ମଣଙ୍କୁ ପଠାଇଦେଲେ । ଲକ୍ଷ୍ମଣ ଧନୁଧରି ବଣକୁ ଚାଲି-ଗଲେ । ସୀତାଦେବୀ ଏକଲା ରହିଲେ କୁଡ଼ିଆରେ ।

ଏହି ସମୟରେ ରାବଣ ମାୟାଯୋଗୀ ବେଶଧରି ପାଖରେ ଭିକ ମାଗିଲା । ସୀତା ଭିକ ଦେବାକୁ କୁଡ଼ିଆରୁ ବାହାରି ଆସିଲେ । ରାବଣ ସୀତାଙ୍କୁ ଟେକିନେଇ ପୁଷ୍ପକ ଯାନରେ ବସାଇଦେଲା ଓ ଲଙ୍କାକୁ ବାଟ କାଟିଲା ।

ସୀତାଙ୍କ ବିକଳ କ୍ରନ୍ଦନ ଶୁଣି ଜଟାୟୁ ରାବଣକୁ ବାଧାଦେଲା । ରାବଣ ରାଗିଯାଇ ଚନ୍ଦ୍ରହାସ କଟାରିରେ ଜଟାୟୁର ଦୁଇ ଡେଣା କାଟିଦେଲା । ଅବଶ ହୋଇ ତଳେ ପଡ଼ିଗଲା ଜଟାୟୁ । ଏଥର ରାବଣ ସିଧା ରଥ ବାହିଲା ଲଙ୍କାପୁରକୁ ।

ରାମ ଲକ୍ଷ୍ମଣ କୁଡ଼ିଆକୁ ଫେରିଆସି ଦେଖିଲେ ସୀତା ନାହାନ୍ତି । ସୀତାଙ୍କ ଅଙ୍ଗଲଗି ଫୁଲ ଏଣେତେଣେ ବିଞ୍ଚିହୋଇ ପଡ଼ିଛି । ପାଖ ବଣରେ ଦୁଇ ଭାଇଯାକ ଖୋଜିଲେ । ଡାକହାକ

କଲେ । ଜବାବ ପାଇଲେ ନାହିଁ । ସୀତାଙ୍କୁ ନ ଦେଖି ରାମଚନ୍ଦ୍ର ବ୍ୟସ୍ତ ହୋଇ ପଡ଼ିଲେ ।

ଟିକେ ଦୂରକୁ ଯାଇ ଜଟାୟୁଙ୍କୁ ଦେଖିଲେ । ଜଟାୟୁ ହଣା ଖାଇ ଛଟପଟ ହେଉଥିଲା । ରାମ ଲକ୍ଷ୍ମଣଙ୍କୁ ଦେଖି ପାଖକୁ ଡାକିଲା । ବାବା ରାମ ଲକ୍ଷ୍ମଣ, ମାଆ ସୀତାଙ୍କୁ ଖୋଜୁଛ କି ? ସୀତା ଆଉ ଏଠାରେ ନାହାନ୍ତି । ଲଙ୍କାର ରାଜା ରାବଣ ତାଙ୍କୁ ବଳାତ୍କାର କରି ରଥରେ ବସେଇ ନେଇ ଗଲାଣି । ତମେ ଦକ୍ଷିଣ ଦିଗକୁ ଯାଅ । ଦୁଷ୍ଟ ରାବଣକୁ ମାରି ସୀତା ଉଦ୍ଧାର କର । ମୁଁ ଦୁଷ୍ଟ ରାବଣକୁ ବାଧା ଦେଉଥିଲି । ପାପିଷ୍ଠ ରାବଣ ମୋ ଡେଣା ହାଣି ପକାଇଲା ।

ଏତିକି କହି ପକ୍ଷୀରାଜ ଜଟାୟୁ ମରିଗଲା । ରାମ ଲକ୍ଷ୍ମଣ ଜଟାୟୁ ପକ୍ଷୀକୁ ସଂସ୍କାର କରି ଦକ୍ଷିଣ ଦିଗକୁ ଚାଲିଲେ ।

ଯେଉଁ ବଣ ପ୍ରକୃତିର ଶୋଭା ଦେଖି ରାମଚନ୍ଦ୍ର ଅପାର ଆନନ୍ଦ ଅନୁଭବ କରୁଥିଲେ, ସେହି ପ୍ରାକୃତିକ ଦୃଶ୍ୟ ରାମଚନ୍ଦ୍ରଙ୍କୁ ଅସହ୍ୟ ବୋଧ ହେଲା । ସେ ସୀତାଙ୍କ କଥା ମନେପକେଇ ଅସ୍ଥିର ହୋଇ ପଡ଼ିଲେ । ସୀତାଙ୍କ ଗୁଣ ସ୍ମରଣ କରି କଇଁକଇଁ ହୋଇ କାନ୍ଦିଲେ । ଖିଆପିଆ କଲେନାହିଁ । ପାଣି ଟୋପିଏ ବି ପିଇଲେ ନାହିଁ । ଅତି ବିକଳ ହୋଇ କାନ୍ଦିଲେ ।

ଲକ୍ଷ୍ମଣଙ୍କ ମନରେ ଘୋର ଦୁଃଖ ଜାତ ହୋଇଥିଲା । ସେ ଧୈର୍ଯ୍ୟଧରି ରାମଚନ୍ଦ୍ରଙ୍କୁ ବହୁତ କରି ବୁଝାଇଲେ । କହିଲେ, ଭାଇ ଯାହା ହେବାର ହୋଇଗଲାଣି । ସେଥିପାଇଁ ଦୁଃଖ କଲେ

କଣ ହେବ ? ତମେ ଆଜ ଅଧୈର୍ଯ୍ୟ ହୁଅନା । ଅଧୈର୍ଯ୍ୟ ହେଲେ ଆମେ ସୀତାଙ୍କୁ ଉଦ୍ଧାର କରିପାରିବା ନାହିଁ । ବିପଦ ବେଳେ କାତର ହେବା ଉଚିତ ନୁହେଁ । ସାହସର ସହିତ ଆମେ ପରିସ୍ଥିତିର ମୁକାବିଲା କରିବା । ଅଧୈର୍ଯ୍ୟ ହେଲେ ଆମର ବଳ, ବୁଦ୍ଧି ଓ ସାହସ ଲୋପ ପାଇଯିବ । ଆମେ ଶକ୍ତିହୀନ ହୋଇ ପଡ଼ିବା । ଦୁଷ୍ଟ ରାବଣ ସୀତାଙ୍କୁ ଚୋରିକରି ନେଇଯାଇଛି । ଆମେ ସନ୍ଧାନ ନେଇ ଲଙ୍କା ଯିବା । ଦୁଷ୍ଟ ରାବଣକୁ ମାରି ସୀତା ଉଦ୍ଧାର କରିବା । ତମେ ଆଉ ଦୁଃଖ କରନା ।

ଲକ୍ଷ୍ମଣଙ୍କ ସାନ୍ତ୍ୱନା ବାକ୍ୟ ଶୁଣି ରାମଚନ୍ଦ୍ର ଟିକିଏ ସ୍ଥିର ହେଲେ । ରାବଣ ଉପରେ ରାଗିଯାଇ କହିଲେ—ପାପିଷ୍ଠ ! ଅସହାୟ ଅବସ୍ଥାରେ ତୁ ସୀତାଙ୍କୁ ଚୋରିକରି ନେଇଗଲୁ । ଯଦି ଆମ ଦୁଇଭାଇଙ୍କୁ ଯୁଦ୍ଧରେ ପରାସ୍ତ କରି ସୀତାଙ୍କୁ ନେଇଥାନ୍ତୁ ତାହାହେଲେ ତୋର ବୀରପଣିଆ ପ୍ରକାଶ ପାଇଥାନ୍ତା । ଲଙ୍କାର ରାଜା ହୋଇ ତୁ ନାରୀ ଚୋରିକଲୁ କିପରି ? ତତେ କ'ଣ ରାଜଧର୍ମ ଜଣାନାହିଁ । ହଉ ଟିକିଏ ଅପେକ୍ଷା କର । ତୋର ଶେଷବେଳ ନିକଟ ହୋଇଗଲାଣି । ମୋ ଶର ମୁନରୁ ତତେ କେହି ରକ୍ଷାକରି ପାରିବେ ନାହିଁ ।

ଏହାପରେ ରାମ ଲକ୍ଷ୍ମଣ ଦକ୍ଷିଣ ଦିଗକୁ ଗଲେ । ପମ୍ପା ସରୋବର ପାଖରେ ଶବରୀ ସାଧିକା ଶ୍ରମଣୀଙ୍କ ଆଶ୍ରମରେ ପହଞ୍ଚିଲେ । ଶ୍ରମଣୀ ରାମ ଲକ୍ଷ୍ମଣଙ୍କୁ ଅତିଥି ରୂପରେ ପାଇ ଯଥୋଚିତ ସତ୍କାର କଲେ । ଦିନଟିଏ ସେହି ଆଶ୍ରମରେ ରହି ରାମ ଲକ୍ଷ୍ମଣ ପୁଣି ସୀତାଙ୍କୁ ଖୋଜିବା ପାଇଁ ବାହାରିଲେ ।

ରାମ ଲକ୍ଷ୍ମଣ କଉନ୍ଧା ନାମକ ଜଣେ ଜଙ୍ଗଲୀ ଲୋକଠାରୁ ରାବଣ ବିଷୟରେ ଅନେକ କଥା ଶୁଣିବାକୁ ପାଇଲେ । ସେ କହିଥିଲା—ରାମଚନ୍ଦ୍ର ! ତମେ ଋଷ୍ୟମୂକ ପର୍ବତକୁ ଯାଅ । ସେଠାରେ ସୁଗ୍ରୀବ ରହିଛନ୍ତି । ତାଙ୍କ ସହିତ ମିତ୍ରତା ସ୍ଥାପନ କଲେ ସେ ସୀତା ଉଦ୍ଧାର ପାଇଁ ତମକୁ ସାହାଯ୍ୟ କରିବେ ।

ସେହି କଉନ୍ଧା କଥା ସ୍ମରଣ କରି ରାମଚନ୍ଦ୍ର ପମ୍ପାସରୋବର ଅତିକ୍ରମ କରି ଋଷ୍ୟମୂକ ପର୍ବତ ଆଡ଼କୁ ଗତିକଲେ ।

ରାମ ଲକ୍ଷ୍ମଣ ଋଷ୍ୟମୂକ ପର୍ବତ ପାଖରେ ପହଞ୍ଚିବା ମାତ୍ରେ ସୁଗ୍ରୀବର ପ୍ରଧାନ ସେନାପତି ହନୁମାନ ତାଙ୍କୁ ଦେଖାକଲେ । ଦୁଇଭାଇଙ୍କୁ ସୁଗ୍ରୀବଙ୍କ ପାଖକୁ ନେଇଗଲେ । ରାମ ସୁଗ୍ରୀବ ମିତ ବସିଲେ । ରାମଚନ୍ଦ୍ର ବାଳିବଧ କରି ସୁଗ୍ରୀବଙ୍କୁ କିଷ୍କିନ୍ଧାରେ ରାଜା କଲେ ।

ବର୍ଷାକାଳ ଆରମ୍ଭ ହୋଇ ଯାଇଥିଲା । ସୁଗ୍ରୀବ ବିନମ୍ର ହୋଇ କହିଲେ—ସଖା ରାମଚନ୍ଦ୍ର ! ବର୍ଷାଋତୁଟା କଟିଯାଉ, ତା’ପରେ ମୁଁ ସୀତାଠାବ କରିବାର ବ୍ୟବସ୍ଥା କରିବି ।

ରାମଚନ୍ଦ୍ର ପ୍ରସ୍ରବଣ ପର୍ବତରେ ଅତି ଦୁଃଖରେ ବର୍ଷାଋତୁ କଟାଇଲେ । ସୁଗ୍ରୀବ ରାଜସୁଖରେ ରହି ରାମଚନ୍ଦ୍ରଙ୍କ କଥା ଭୁଲିଗଲେ । ଭୋଗବିଳାସରେ ବୁଡ଼ି ରହିଲେ । ସୀତାଠାବ କରିବା ପାଇଁ କିଛି ଉଦ୍ୟମ କଲେ ନାହିଁ । ରାମଚନ୍ଦ୍ରଙ୍କୁ ଥରେ ମାତ୍ର ଦେଖା କରିବାକୁ ଗଲେନାହିଁ ।

ବର୍ଷାଋତୁ ପରେ ଶରତ୍‌ଋତୁ ଆସିଲା । ମେଘ ବରଷା ଛାଡ଼ିଗଲା । ଜଗ ନିର୍ମଳ ଦିଶିଲା । ବାଟଘାଟ ଶୁଖିଲା ହୋଇଗଲା ; କିନ୍ତୁ ସୁଗ୍ରୀବଙ୍କଠାରୁ କିଛି ଖବର ମିଳିଲାନାହିଁ । ରାମଚନ୍ଦ୍ର ଅତି ବ୍ୟସ୍ତହୋଇ ପଡ଼ିଲେ । କହିଲେ—ଲକ୍ଷ୍ମଣ, ସୁଗ୍ରୀବ ଆମ କଥା ପ୍ରାୟ ଭୁଲିଗଲେଣି । ସୀତାଠାବ ହେବ କିପରି ?

ଲକ୍ଷ୍ମଣ କହିଲେ—ଭାଇ, ମୁଁ ଆଜ କିଷ୍କିନ୍ଧା କଟକକୁ ଯିବି । ଶେଷଥରପାଇଁ ସୁଗ୍ରୀବଙ୍କୁ ପଚାରିବି । ସେ ନାହିଁ କରିଦେଲେ ତାଙ୍କ ଭରସା ଛାଡ଼ି ଆମେ ଅନ୍ୟ ବ୍ୟବସ୍ଥା କରିବା । ଅଯଥା ସମୟ ନଷ୍ଟ କରିବା ନାହିଁ ।

ସଙ୍ଗେସଙ୍ଗେ ଲକ୍ଷ୍ମଣ କିଷ୍କିନ୍ଧା ବାହାରିଗଲେ । ଦୁର୍ଗ-ଦ୍ୱାରରେ ଠିଆହୋଇ ଭିତରକୁ ଖବର ଦେଲେ । ସୁଗ୍ରୀବ ଖବର ପାଇଲେ କିନ୍ତୁ ବେଖାତିର କରି ଲକ୍ଷ୍ମଣଙ୍କୁ ଦେଖା ଦେଲେ-ନାହିଁ । ବହୁ ସମୟ ବାହାରେ ଛିଡ଼ାହୋଇ ଲକ୍ଷ୍ମଣ ମନେ-ମନେ ରାଗିଗଲେ । ଏହି ସମୟରେ ବାଳିପୁତ୍ର ଅଙ୍ଗଦ ବାହାରକୁ ଆସିଲେ । ତାଙ୍କୁ ଦେଖି ଲକ୍ଷ୍ମଣ କହିଲେ—ଯୁବରାଜ, ସୁଗ୍ରୀବ ଗଡ଼ ଭିତରେ ନାହାନ୍ତି କି ? ତାଙ୍କୁ ଟିକିଏ ମୋ ପାଖକୁ ଡାକି ଦିଅ । କହିବ, ରାମାନୁଜ ଲକ୍ଷ୍ମଣ ସିଂହଦ୍ୱାରରେ ଅପେକ୍ଷା କରିଛନ୍ତି । ସୀତାଠାବ ବିଷୟରେ ପଦେ କଥା ବୁଝିବାକୁ ଛିଡ଼ା ହୋଇଛନ୍ତି । ମୋ କଥା ଶୁଣି ଯଦି ଦଣ୍ଡିକ ଭିତରେ ନ ଆସନ୍ତି ତା'ହେଲେ ମୁଁ ଏଇଠୁ ଫେରିଯିବି । ଆଉ ଫେରିବା ପୂର୍ବରୁ ସୁଗ୍ରୀବଙ୍କ ମୁଣ୍ଡଟା କାଟିଦେଇ ଯିବି ।

ଅଙ୍ଗଦ ଗଡ଼ ଭିତରକୁ ଗଲେ । ତମାଆଡ଼ି ପୁରନାରୀଙ୍କ ଗହଣରେ ବସି ସୁଗ୍ରୀବ ମନମଉଜରେ କଥାବାର୍ତ୍ତା ହେଉ-

ଥିଲେ । ଅଙ୍ଗଦଙ୍କଠାରୁ ଲକ୍ଷ୍ମଣଙ୍କ କ୍ରୋଧ କଥା ଶୁଣି ତାଙ୍କ ଆସନ ଦୋହଲିଲା । ଭୟରେ ତାଙ୍କ ଗୁଣ୍ଡ ଥରିଲା । ଲକ୍ଷ୍ମଣଙ୍କ ପାଖକୁ ଯିବାପାଇଁ ସାହସ କଲେ ନାହିଁ । ଅଙ୍ଗଦ ଓ ତାରାଙ୍କୁ ଲକ୍ଷ୍ମଣଙ୍କ କ୍ରୋଧ ଶାନ୍ତ କରିବାକୁ ପଠାଇଲେ । ତାରା ଓ ଅଙ୍ଗଦ ଅତି ବିନୟୀ ହୋଇ ଲକ୍ଷ୍ମଣଙ୍କ କ୍ରୋଧଶାନ୍ତ କରିବାକୁ ବହୁତ କଥା କହିଲେ । ଶେଷରେ ଗଡ଼ ଭିତରକୁ ଆଦରକରି ଡାକିନେଲେ ।

ସୁଗ୍ରୀବ ଲକ୍ଷ୍ମଣଙ୍କୁ ସୁନାର ଆସନରେ ବସାଇଲେ । କହିଲେ—ବୀରବର, ମୁଁ ବଡ଼ ଭୁଲ କରିଛି । ସଖାଙ୍କୁ ଟିକେ ଯାଇ ଦେଖା କରିପାରିଲି ନାହିଁ । ସୁଖଭୋଗରେ ରହି ମୋର ମତି ଭ୍ରମ ହୋଇଗଲା । ତେବେ ମୁଁ ସଖାଙ୍କ କାମରେ ହେଳା କରି-ନାହିଁ । ବାନର ସେନାପତିମାନଙ୍କୁ ଡକାଇଛି । ସେମାନେ ଅଳ୍ପଦିନ ମଧ୍ୟରେ ପହଞ୍ଚିବେ । ସେମାନେ ଆସିଗଲା ମାତ୍ରେ ମୁଁ ସଖାଙ୍କୁ ଦେଖାକରିବି । ସୀତାଠାବ କରିବାର ଦାୟିତ୍ୱ ମୁଁ ହାତକୁ ନେଇଛି । ଯେ କୌଣସି ପ୍ରକାରେ ମୁଣ୍ଡ ଲଗେଇବ ।

ଲକ୍ଷ୍ମଣ ପ୍ରସ୍ରବଣ ପର୍ବତକୁ ଫେରିଗଲେ । ରାମଚନ୍ଦ୍ରଙ୍କ ଆଗରେ ସୁଗ୍ରୀବଙ୍କ କଥା ଜଣାଇଲେ ।

ଦୁଇ ଚାରି ଦିନ ପରେ ସୁଗ୍ରୀବ ବାନରସେନା ଓ ସେନାପତି-ମାନଙ୍କୁ ନେଇ ରାମଚନ୍ଦ୍ରଙ୍କ ପାଖରେ ପହଞ୍ଚିଲେ । ଖଣ୍ଡେ ଦୂରରୁ ପ୍ରଣାମ ଜଣାଇ କହିଲେ—ସଖା, ଟିକେ ବିଳମ୍ବ ହୋଇଗଲା । ମୋ ଦୋଷ କ୍ଷମା କର । ସୈନ୍ୟ, ସେନାପତିମାନେ ଆସିଗଲେଣି । ଏଥର କଣ କରିବା ସ୍ଥିର କର ।

ରାମଚନ୍ଦ୍ର ସଖା ସୁଗ୍ରୀବଙ୍କୁ ଆଲିଙ୍ଗନକରି ପାଖରେ ବସା-ଇଲେ । କହିଲେ—ସଖା, ସୀତାଠାବ କରିବା ଦାୟିତ୍ୱ ନିଜ ହାତକୁ ନେଇଛ । ସେଥିପାଇଁ ଉପଯୁକ୍ତ ବ୍ୟବସ୍ଥା କର । ମତେ କିଛି ପଚାରିବା ଆବଶ୍ୟକ ନାହିଁ ।

ସୁଗ୍ରୀବ ଚାରି ଦିଗକୁ ଚାରିଦଳ ବାନରସେନା ପଠାଇ ସୀତା-ଠାବ କରିବାକୁ ସ୍ଥିର କଲେ । ଯୂଥପତି ବିନତଙ୍କୁ କିଛି ବାନର-ସେନା ଦେଇ ପୂର୍ବଦିଗରେ ସୀତାଙ୍କୁ ଖୋଜିବା ପାଇଁ ପଠାଇଲେ । ପଶ୍ଚିମ ଦିଗରେ ସୀତା ଅନ୍ୱେଷଣ କରିବା ପାଇଁ ସୈନ୍ୟସାମନ୍ତ ନେଇ ସୁଷେଣ ଯାତ୍ରାକଲେ । ଉତ୍ତର ଦିଗକୁ ସୈନ୍ୟବଳ ଧରି ଯୂଥପତି ଶତାବଳୀ ବାହାରି ପଡ଼ିଲେ । ଦକ୍ଷିଣ ଦିଗରେ ଲଙ୍କା ଦ୍ୱୀପ ଅବସ୍ଥିତ ଥିବାରୁ ଓ ସେଠାରେ ସୀତା ରହିଥିବାର ସମ୍ଭାବନା ବେଶି ଥିବାରୁ ସୁଗ୍ରୀବ ପ୍ରଧାନ ଯୂଥପତି ଓ ସେନାପତି-ମାନଙ୍କୁ ସେ ଦିଗକୁ ପଠାଇବା ପାଇଁ ଯୁକ୍ତିଯୁକ୍ତ ମନେକଲେ । ଦକ୍ଷିଣ ଦିଗ ଅନ୍ୱେଷଣକାରୀଙ୍କ ଦଳପତି ହେଲେ ଅଙ୍ଗଦ । ତାଙ୍କ ସଙ୍ଗରେ ହନୁମାନ, ନୀଳ, ଜାମ୍ବବାନ, ଗଜ, ଗବାକ୍ଷ, ଗବୟ, ମୈନ୍ଦ, ଦ୍ୱିବିଦ ଆଦି ବାନର ସେନାପତିମାନେ ମଧ୍ୟ ଗଲେ ।

ପୂର୍ବ, ପଶ୍ଚିମ ଓ ଉତ୍ତର ଦିଗକୁ ଯାଇଥିବା ଦଳପତିମାନେ ମାସକ ଭିତରେ ଫେରିଆସିଲେ । ସେମାନେ କୌଣସି ସ୍ଥାନରେ ସୀତାଙ୍କ ସନ୍ଧାନ ପାଇ ନ ଥିଲେ । ମାସେ ଦେଢ଼ ମାସ ପରେ ଦକ୍ଷିଣ ଦିଗର ଦଳପତି ଫେରିଲେ । ଏହି ଦଳରେ ଯାଇଥିବା ମହାବୀର ହନୁମାନ ସମୁଦ୍ର ଡେଇଁ ଲଙ୍କା ଦ୍ୱୀପକୁ ଯାଇଥିଲେ ଓ ଅଶୋକ ବନରେ ସୀତାଦେବୀଙ୍କୁ ଠାବ କରିଥିଲେ ।

ହନୁମାନଙ୍କଠାରୁ ସୀତାଙ୍କ ସନ୍ଧାନ ମିଳିଗଲା ପରେ ଲକ୍ଷ୍ମଣ ଅତିଶୟ ଆନନ୍ଦ ପ୍ରକାଶ କଲେ । କହିଲେ—ଭାଇ, ଆଉ ଡେରି କରିବା ଉଚିତ ନୁହେଁ । ଯୁଦ୍ଧଯାତ୍ରା ଆରମ୍ଭ କରିବା ।

ରାମଚନ୍ଦ୍ର ଶୁଭଦିନ ସ୍ଥିର କରିଦେଲେ । ବାନରସେନା ଓ ସେନାପତିମାନେ ଯୁଦ୍ଧଯାତ୍ରା କରିବାକୁ ପ୍ରସ୍ତୁତ ହୋଇ ରହିଲେ ।

ବାନରସେନା ଓ ସେନାପତିମାନେ ଅଳ୍ପଦିନ ମଧ୍ୟରେ ସମୁଦ୍ର କୂଳରେ ପହଞ୍ଚିଗଲେ । ସମୁଦ୍ର ମଝିରେ ଲଙ୍କା ଦ୍ୱୀପ ଦେଖାଯାଉ-ଥିଲା । ପୋଲଟିଏ ତିଆରି ନ କଲେ ଲଙ୍କାକୁ ଯିବା ସମ୍ଭବ ହେଲା ନାହିଁ । ବାନରମାନେ ପର୍ବତଶୃଙ୍ଗ ପଥର ବୋହି ଆଣିଲେ । ବାନରଶିରୋମଣି ନଳ ଜାବିଗର୍ଯ୍ୟ ବୁଦ୍ଧି ଖର୍ଚ୍ଚ କରି ସମୁଦ୍ରରେ ପୋଲଟିଏ ନିର୍ମାଣ କରିଦେଲେ । ତା'ପରେ ବାନରମାନେ ଘୋର ଗର୍ଜନ କରି ପୋଲ ଉପର ଦେଇ ଲଙ୍କାରେ ପହଞ୍ଚିଲେ । ରାମଚନ୍ଦ୍ର, ସଖା ସୁଗ୍ରୀବ ଓ ସାନଭାଇ ଲକ୍ଷ୍ମଣ ସହିତ ଲଙ୍କା-ଦ୍ୱୀପରେ ପହଞ୍ଚିଲେ । ସୁବଳ ପର୍ବତରେ ଛାଉଣି ପକାଇ ରହିଲେ ।

ରାବଣ ରାମଚନ୍ଦ୍ରଙ୍କ ଲଙ୍କା ଅଭିଯାନ ବାର୍ତ୍ତା ପାଇ ଆଶ୍ଚର୍ଯ୍ୟ ହୋଇଗଲା । ଶୁକ, ସାରଣ ମନ୍ତ୍ରୀଙ୍କୁ ଡାକି ରାମଚନ୍ଦ୍ରଙ୍କ ସୈନ୍ୟ କଳନା କରିବାକୁ ପଠାଇଲା । ଶୁକ ଓ ସାରଣ ମାୟାରୂପ ଧରି ଶ୍ରୀରାମଙ୍କ ଛାଉଣିରେ ପ୍ରବେଶ କଲେ । ସୈନ୍ୟମାନଙ୍କ ସଂଖ୍ୟା ଓ ବଳ କଳନା କରି ଫେରିଗଲେ । ରାବଣ ଆଗରେ ରାମଚନ୍ଦ୍ରଙ୍କ ବଳବିକ୍ରମ ଓ କପିସେନାଙ୍କ ଶକ୍ତି ବିଷୟରେ ସଠିକ ବିବରଣୀ ଦେଲେ । ରାବଣ ଶୁକ, ସାରଣ ମନ୍ତ୍ରୀଙ୍କ କଥାକୁ ବିଶ୍ୱାସ ଗଲା-

ନାହିଁ । ପୁଣି ଗୁପ୍ତଚର ଶାର୍ଦ୍ଦୂଳକୁ ପଠାଇଲା । ଶାର୍ଦ୍ଦୂଳ କାଇଦାରେ ସୁବେଳ ପର୍ବତରେ ପହଞ୍ଚିଲା । ଛଦ୍ମବେଶରେ ରାମଚନ୍ଦ୍ରଙ୍କ ସୈନ୍ୟ ଓ ସେନାପତିଙ୍କ ସଂଖ୍ୟା ଓ ବଳବିକ୍ରମ ବିଷୟ କଳନା କରି ରାବଣ ଆଗରେ ବ୍ୟକ୍ତକଲା ।

ରାବଣର ଅଜା ସୁମାଳୀ ରାକ୍ଷସ ସୀତାଙ୍କୁ ଫେରାଇ ଦେବା-ପାଇଁ ରାବଣକୁ ପରାମର୍ଶ ଦେଲା । ରାବଣର ମାଆ ନିକଷା ବି ସେହି କଥା କହିଲା । ଶେଷରେ ବିଭୀଷଣ ଆସି ପହଞ୍ଚିଲେ । କହିଲେ—ଭାଇ, ରାମଚନ୍ଦ୍ରଙ୍କ ସହିତ ଶତ୍ରୁତା କରନା । ସୀତାଙ୍କୁ ନେଇ ତାଙ୍କ ପାଖରେ ଫେରାଇ ଦେଇ ଆସ । ତା' ନ ହେଲେ ଲଙ୍କା ରାଜ୍ୟ ଛାରଖାର ହୋଇଯିବ ।

ବିଭୀଷଣ କଥା ଶୁଣି ରାବଣ ରାଗିଗଲା । ବିଭୀଷଣକୁ ଗାଳି-ଗୁଲଜ କରି, ଚଣ୍ଢିଆ ମାରି ରାଜ୍ୟରୁ ବାହାର କରିଦେଲା ।

ବିଭୀଷଣ ଲଙ୍କାଗଡ଼ରୁ ବାହାରି ଆସି ସୁବେଳ ପର୍ବତକୁ ଗଲେ ଓ ରାମଚନ୍ଦ୍ରଙ୍କ ପାଦରେ ଶରଣ ପଶିଲେ । ରାମଚନ୍ଦ୍ର ବିଭୀଷଣଙ୍କୁ ଆଶ୍ରୟ ଦେଇ ପାଖରେ ରଖିଲେ । କହିଲେ—ବିଭୀଷଣ, କିଛି ଭୟ କରନା । ରାବଣକୁ ମାରି ମୁଁ ତମକୁ ଲଙ୍କାରେ ରାଜା କରିବି ।

ତା'ପରେ ରାମଚନ୍ଦ୍ର ପାତ୍ର, ଭାଲୁ ଓ ବାନରସେନାଙ୍କୁ ଯୁଦ୍ଧ କୌଶଳ ବତାଇ ଦେଲେ । ସତର୍କ ହୋଇ ଲଙ୍କା ରାଜ୍ୟର ସୈନ୍ୟ ଓ ସେନାପତିଙ୍କ ସହିତ ଯୁଦ୍ଧ କରିବାକୁ କହିଲେ ।

ବାନରମାନେ ଶ୍ରୀରାମଙ୍କ ଜୟଧ୍ୱନି କଲେ । କହିଲେ—ପ୍ରଭୁ, ଆପଣ ଆଦୌ ଚିନ୍ତା କରନ୍ତୁ ନାହିଁ । ରାବଣର ସୈନ୍ୟସେନା ଆମକୁ ବୁଝିକେଇ ଯିବେ ନାହିଁ । ଯିଏ ଆମ ସାମନାକୁ ଆସିବ ସିଏ ଆଉ ଲଙ୍କାକୁ ଫେରିବ ନାହିଁ

ରାତି ପାହିଲାମାତ୍ରେ ବାନରମାନେ ପାଖ ପାହାଡ଼ ପର୍ବତରୁ ପେଟେ‌ପେଟେ ଫଳମୂଳ ଖା'ଇ ଲଙ୍କାଗଡ଼ର ଉତ୍ତର ଫାଟକ ଆକ୍ରମଣ କଲେ ।

ରାବଣର ସୈନ୍ୟସାମନ୍ତମାନେ ଅସ୍ତ୍ରଶସ୍ତ୍ର ଧରି ଛୁଟିଆସିଲେ । ଦୁଇଦଳ ମଧ୍ୟରେ ଭୟଙ୍କର ଲଢ଼େଇ ହେଲା । ବାନରମାନେ ଗଛଡାଳ ଭାଙ୍ଗି ସେଥିରେ ରାକ୍ଷସମାନଙ୍କୁ ବାଡ଼େଇ ମାରିଦେଲେ ।

ରାବଣ ପୁଣି ବହୁସଂଖ୍ୟକ ସୈନ୍ୟ ପଠାଇଲା । ହାତୀ, ଘୋଡ଼ା ଚଢ଼ି ରାକ୍ଷସସେନା ଯୁଦ୍ଧକ୍ଷେତ୍ରକୁ ଛୁଟିଆସିଲେ । ଖଣ୍ଡା, ତରବାରି, ଶେଲ, କୁନ୍ତ, ଶୂଳ, ମୁଦ୍‌ଗର ଧରି ବାନରସେନାଙ୍କୁ ଆକ୍ରମଣ କଲେ । ବାନରସେନାମାନେ ସ୍ୱରଦର୍ପରେ ମାତିଉଠି ଘୋର ଯୁଦ୍ଧ କଲେ ଓ ଅଳ୍ପ ସମୟ ମଧ୍ୟରେ ରାକ୍ଷସ ବାହିନୀକୁ ମାରି ଶୋଇଦେଲେ ।

ତଥାପି ରାବଣ ଡରିଲା ନାହିଁ । ନିଜର ସେନାପତିମାନଙ୍କୁ ଯୁଦ୍ଧ କରିବାକୁ ପଠାଇଲା । ଧୂମ୍ରାକ୍ଷ, ବଜ୍ରଦଂଷ୍ଟ୍ର, ଅକମ୍ପନ ଓ ପ୍ରହସ୍ତ ଆଦି ଚାଣ୍ଡିଆ ସେନାପତିମାନେ ଯୁଦ୍ଧ କରି ମୃତ୍ୟୁବରଣ କଲେ । ଏହାପରେ ନିଜେ ରାବଣ ଯୁଦ୍ଧ କରିବାକୁ ଆସିଲା,

ପାରିଲା ନାହିଁ । ରାମଙ୍କଠାରୁ ପରାଜୟ ସ୍ୱୀକାର କରି ଫେରିଗଲା ।

ଅନ୍ୟ ଉପାୟ ନ ଦେଖି ରାବଣ କୁମ୍ଭକର୍ଣ୍ଣର ନିଦ୍ରାଭଙ୍ଗ କରାଇଲା । କୁମ୍ଭକର୍ଣ୍ଣ ନିଦରୁ ଉଠି ଯୁଦ୍ଧକ୍ଷେତ୍ରରେ ପହଞ୍ଚିଲା । ତାର ବିଶାଳ ବପୁ ଦେଖି ବାନରମାନେ ଟିକେ ଡରିଗଲେ । ଲକ୍ଷ୍ମଣ ନିଜ ପକ୍ଷର ଲଢ଼ୁଆ ବୀରମାନଙ୍କୁ ସାହସ ଦେଇ ଯୁଦ୍ଧ ଚଳାଇଲେ । ଘୋର ଯୁଦ୍ଧ ହେଲା । ଶେଷରେ କୁମ୍ଭକର୍ଣ୍ଣ ରାମଚନ୍ଦ୍ରଙ୍କ ବାଣ ଆଘାତରେ ମୃତ୍ୟୁବରଣ କଲା ।

କୁମ୍ଭକର୍ଣ୍ଣପରି ବଳୁଆ ଭାଇର ମୃତ୍ୟୁଖବର ପାଇ ରାବଣ କାନ୍ଦିପକାଇଲା । କଣ କରିବ ବୋଲି ତାକୁ ବୁଦ୍ଧି ଦେଖାଗଲା ନାହିଁ । ଚାରିଆଡ଼ ତାକୁ ଅନ୍ଧାର ଦେଖାଗଲା ।

ଏହି ସମୟରେ ରାବଣର ବଡ଼ପୁଅ ମେଘନାଦ ଆସି ପହଞ୍ଚିଲା । ନିଜେ ଯୁଦ୍ଧକୁ ଯିବାପାଇଁ ସଜ ହେଲା । କହିଲା— ପିତା, ଆପଣ ଆଉ ଦୁଃଖ କରନ୍ତୁ ନାହିଁ । ଆଜି ଯୁଦ୍ଧରେ ମୁଁ ରାମ, ଲକ୍ଷ୍ମଣଙ୍କୁ ବନ୍ଦୀ କରି ଆଣିବି । ପାଉ, ଭାଲୁ ଓ ବାନରମାନଙ୍କୁ ସମୁଦ୍ରରେ ବୁଡ଼ାଇ ମାରିବି ।

ଏହିପରି ପ୍ରତିଜ୍ଞା କରି ମେଘନାଦ ବହୁ ସୈନ୍ୟସାମନ୍ତ ଧରି ଯୁଦ୍ଧ କ୍ଷେତ୍ରରେ ପହଞ୍ଚିଲା । ବୀରଦର୍ପରେ ମାତିଉଠି ଘୋର ଯୁଦ୍ଧ କଲା । ରାମ, ଲକ୍ଷ୍ମଣଙ୍କୁ ବନ୍ଦୀକରି ପାରିଲା ନାହିଁ । ଶେଷରେ ମାୟା ସୀତା ରୂପ ଗଢ଼ି ରାମଚନ୍ଦ୍ରଙ୍କ ଆଗରେ ଛିଡ଼ା ହୋଇଗଲା । କହିଲା—ରାମଚନ୍ଦ୍ର, ଏଇ ସୀତା ପାଇଁ ତ ଯୁଦ୍ଧ କରୁଛ । ଆଜି

ତାକୁ ତମ ଆଗରେ ମାରିଦେବ । ଏହା କହି ମେଘନାଦ କଟାରି ବାହାର କରି ମାୟାସୀତା ମୁଣ୍ଡ କାଟିଦେଲା ।

ସ୍ୱଚକ୍ଷୁରେ ସୀତାଙ୍କ ମୃତ୍ୟୁ ଦେଖି ରାମଚନ୍ଦ୍ର କାନ୍ଦି ପକାଇଲେ, ଲକ୍ଷ୍ମଣ ମଧ୍ୟ କାନ୍ଦିଲେ । ମେଘନାଦ ଖୁସିହୋଇ ଲଙ୍କାଗଡ଼କୁ ଫେରିଗଲା ।

ଏହାପରେ ବିଭୀଷଣ ରାମଚନ୍ଦ୍ରଙ୍କୁ କହିଲେ—ପ୍ରଭୁ ! ମାୟା-ସୀତା ମୃତ୍ୟୁ ଦେଖି କାନ୍ଦୁଛନ୍ତି କାହିଁକି ? ସୀତା ଅଶୋକବନରେ ଅଛନ୍ତି । ଇନ୍ଦ୍ରଜିତ ମାୟାକୁ ସତ ମଣନ୍ତୁ ନାହିଁ । ରାମ, ଲକ୍ଷ୍ମଣ ଆଶ୍ୱସ୍ତ ହେଲେ । ସନ୍ଧ୍ୟା ହୋଇଯାଇଥିଲା । ରାମ, ଲକ୍ଷ୍ମଣ ଓ ବାନରମାନେ ଛାଉଣିକୁ ଫେରିଗଲେ ।

ଇନ୍ଦ୍ରଜିତ ଯୁଦ୍ଧରୁ ଫେରି ଖାଇସାରି ଶୋଇବାକୁ ଗଲା; କିନ୍ତୁ ତାକୁ ନିଦ ହେଲା ନାହିଁ । ଲଙ୍କାର ଶୋଚମୀୟ ଅବସ୍ଥା ଚିନ୍ତା-କରି ଦୁଃଖିତ ହୋଇପଡ଼ିଲା । ସେଦିନ ଯୁଦ୍ଧରେ ସେ ରାମ-ଲକ୍ଷ୍ମଣଙ୍କ ବୀରତ୍ୱ ଦେଖି ଚମକି ଯାଇଥିଲା ।

ଭାବିଲା ରାମ, ଲକ୍ଷ୍ମଣ ସାମାନ୍ୟ ଯୋଦ୍ଧା ନୁହନ୍ତି । ଆକାଶରେ ମାୟାମେଘ ସୃଷ୍ଟି କରି, ତା'ରି ଉହାଡ଼ରେ ରହି ମୁଁ ଯୁଦ୍ଧ କଲି ବୋଲି ସେ ମୋର ଟେର ପାଇଲେ ନାହିଁ । କ୍ଷଣକପରେ ମାୟା ଭେଲିକି ଦେଖାଇ ମୁଁ ତାଙ୍କ ଆଗରୁ ଖସିଆସିଲି । ତା' ନ ହେଲେ ମୋ ଅବସ୍ଥା ବି ସାଙ୍ଘାତିକ ହୋଇ ଯାଇଥାନ୍ତା ।

ବାପାଙ୍କୁ କଥା ଦେଇଛି ରାମ, ଲକ୍ଷ୍ମଣଙ୍କୁ ବାନ୍ଧିଆଣି ତାଙ୍କ ପାଦରେ ଭେଟି ଦେବି । ବାନର ସେନାଙ୍କୁ ସମୁଦ୍ରରେ ପକାଇ

ମାରିବି । କହିଦେଲି ସିନା, କଥାକୁ କାର୍ଯ୍ୟରେ ପରିଣତ କରିବି କିପରି ? ହନୁମାନ, ଅଙ୍ଗଦ, ସୁଗ୍ରୀବ ଆଦି ବୀରମାନଙ୍କ ଶକ୍ତି କମ୍ ନୁହେଁ । କଣ କରିବି ? ଅନେକ ଅନେକ ଲଙ୍କାଗଡ଼ ବୀରଶୂନ୍ୟ ହୋଇଗଲାଣି । ଧୂମ୍ରାକ୍ଷ, ବଜ୍ରଦଂଷ୍ଟ୍ରା, ଅକମ୍ପନ ଓ ପ୍ରହସ୍ତ ପରି ବିଶ୍ୱଜୟୀ ସେନାପତିମାନେ ମୃତ୍ୟୁ ବରଣ କଲେଣି । ସେପରି ଆଉ କେହି ଝାଣ୍ଟୁଆ ସେନାପତି ନାହାନ୍ତି । ମୁଁ ଯଦି ରାମ, ଲକ୍ଷ୍ମଣଙ୍କୁ ମାରି ନ'ପାରେ ତା'ହେଲେ ଲଙ୍କାଗଡ଼ ଗୁହାଳ ହୋଇଯିବ । ସାମାନ୍ୟ ନରବାନରମାନେ ଲଙ୍କାରୁ ରାକ୍ଷସକୁଳ ଲୋପ କରିଦେବେ । ଲଙ୍କାପୁର ରକ୍ଷା କରିବାକୁ ହେଲେ, ରାକ୍ଷସ ବଂଶ ବଞ୍ଚେଇବାକୁ ହେଲେ ରାମ ଲକ୍ଷ୍ମଣଙ୍କୁ ଶେଷ କରିବା ଆବଶ୍ୟକ । ତେବେ ମୁଁ ଏହା କାର୍ଯ୍ୟକାରୀ କରିବି କେମିତି ?

ମେଘନାଦ ରାତି ଅଧଯାଏ ଅନିଦ୍ରା ରହି ରାମ ଲକ୍ଷ୍ମଣଙ୍କୁ ବିନାଶ କରିବାର ଉପାୟ ଚିନ୍ତାକଲା । ଶେଷରେ ବ୍ରହ୍ମାଙ୍କ ବରଦାନ କଥା ତାର ସ୍ମରଣ ହେଲା । ନିରାଶ ହୃଦୟରେ ତା'ର ଆଶାର ଆଲୋକ ଖେଳିଗଲା ।

ମନେମନେ ଭାବିବାକୁ ଲାଗିଲା । ବାପା ସମଗ୍ର ବିଶ୍ୱଜୟ କରି ଶେଷରେ ସ୍ୱର୍ଗପୁର ଆକ୍ରମଣ କଲେ । ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ, ଅଗ୍ନି, ବରୁଣ, ପବନ, ଅଷ୍ଟବସୁ ଓ ମରୁତ୍‌ଗଣମାନେ ପ୍ରାଣପଣେ ଯୁଦ୍ଧକରି ବାପାଙ୍କୁ ବନ୍ଦୀ କରିବାକୁ ଚକ୍ରାନ୍ତ କଲେ । ଦେବତାମାନଙ୍କ ଚକ୍ରାନ୍ତ ଅବଗତ ହୋଇ ମୁଁ ମାୟାଯୁଦ୍ଧ ଆରମ୍ଭ କଲି । ମୁଁ ସମସ୍ତଙ୍କୁ ଦେଖି ପାରୁଥିଲି ; କିନ୍ତୁ ମତେ କେହି ଦେଖିପାରୁ ନ ଥିଲେ । ଯୁଦ୍ଧକରି ଇନ୍ଦ୍ର ବଳହୀନ ହୋଇଗଲେ ।

ଶେଷରେ ମୁଁ ତାଙ୍କୁ ବନ୍ଦୀ କରି ଲଙ୍କା ନେଇ ଆସିଲି । ଦେବତାମାନେ ବ୍ରହ୍ମାଙ୍କ ପାଖରେ ଗୁହାରିକଲେ । ବ୍ରହ୍ମା ଲଙ୍କା ଆସିଲେ । ଇନ୍ଦ୍ରଙ୍କୁ ମୁକୁଳାଇ ନେବାକୁ କଥା ପକାଇଲେ । ବିଶେଷରେ ମୋତେ ବର ଯାଚିଲେ । ଅମର ବର ମାଗିଲି । ଦେଲେ ନାହିଁ ।

ଶେଷରେ ମୁଁ କହିଥିଲି—ବ୍ରହ୍ମାଜୀ ଶତ୍ରୁଜୟ କରିବାକୁ ଇଚ୍ଛା କରି ମୁଁ ଯଜ୍ଞ ଆରମ୍ଭ କଲି ପୂର୍ଣ୍ଣାହୁତି ଦେଲେ ଯଜ୍ଞ ଅନଳରୁ ଏକ ଦିବ୍ୟ ରଥ ବାହାରିବ । ସେହି ରଥରେ ବସି ମୁଁ ଯୁଦ୍ଧ କଲେ ମତେ କେହି ପାରିବେ ନାହିଁ । ଶିବ ବିଷ୍ଣୁ ହେଲେ ବି ପରାଜିତ ହେବେ । ଆଜି ପାହାନ୍ତାରୁ ମୁଁ ସେହି ଯଜ୍ଞ ଆରମ୍ଭ କରିବି । ଶହେ ଆଠ ଆହୁତି ଦେଇ ଯଜ୍ଞ ପୂର୍ଣ୍ଣ କରିବି, । ବ୍ରହ୍ମାଙ୍କ ବର ବ୍ୟର୍ଥ ହେବନାହିଁ । ଯଜ୍ଞ ଅନଳରୁ ନିଶ୍ଚୟ ବିଶ୍ୱଜୟୀ ରଥ ବାହାରିବ । ସେହି ରଥରେ ବସି ମୁଁ ଯୁଦ୍ଧ କରିବି । ରାମ ଲକ୍ଷ୍ମଣଙ୍କୁ ବଧ କରିବା ଆଉ ମୋ ପକ୍ଷରେ କଷ୍ଟ ହେବ ନାହିଁ ।

ଏହିପରି ଚିନ୍ତାକରି ମେଘନାଦ ଖୁସି ହୋଇଗଲା । ନିକୁମ୍ଭିଳା ଉପବନରେ ଯଜ୍ଞ ଆରମ୍ଭ କରିବାକୁ ବାହାରିଗଲା ।

ବିଭୀଷଣ ସୁବେଳ ପର୍ବତରେ ବସିଥିଲେ । ଲଙ୍କାର ଭାଗ୍ୟ ବିପର୍ଯ୍ୟୟ କଥା ସ୍ମରଣ କରି ଶୋଇ ପାରୁନଥିଲେ । ସୁନାର ଲଙ୍କା ସୀତାଙ୍କ ଅଭିଶାପରେ ଚୂନା ହୋଇଯିବାକୁ ବସିଲାଣି । ଯେଉଁ ଲଙ୍କାରାଜ୍ୟର ଶ୍ରୀବୃଦ୍ଧି ସାଧନ କରିବାକୁ ସେ ଦିନରାତି ଚିନ୍ତା କରୁଥିଲେ ଆଜି ସେହି ରାଜ୍ୟ ଧ୍ୱଂସ ହେବାକୁ ଯାଉଛି ।

ଏହି କଥା ତାଙ୍କୁ ଘାରି ବାଧୁଥିଲା । ସେ ଶୋଇପାରୁ ନଥିଲେ । ଅନିଦ୍ରା ରହି ସେହି କଥା ଚିନ୍ତା କରୁଥିଲେ ।

ପୁଣି ଭାବିଲେ, ବଡ଼ ଭାଇ ରାବଣଙ୍କୁ ମୁଁ ଏହି କଥା କହି ରାଜ୍ୟରୁ ବିତାଡ଼ିତ ହେଲି । ଦୟାଳୁ ରାମଚନ୍ଦ୍ର ମୋତେ ଆଶ୍ରୟ ଦେଇ ନ ଥିଲେ ମୋ ଅବସ୍ଥା ଆହୁରି ସାଂଘାତିକ ହୋଇଥାନ୍ତା । ଲଙ୍କାପତି ଯୋଉ ଦମ୍ଭରେ ରାମଚନ୍ଦ୍ରଙ୍କୁ ବେଖାତିର କରୁଥିଲେ ସେ ଦମ୍ଭ ତାଙ୍କର ଟଳିପଡ଼ିଲାଣି । କୁମ୍ଭକର୍ଣ୍ଣ ପରି ଭାଇ ଟଳି ପଡ଼ିଲା । ଲଙ୍କାରେ ମେଘନାଦଙ୍କୁ ଛାଡ଼ିଲେ ଆଉ କେହି ବୀର ନାହାନ୍ତି । ମେଘନାଦ ମାୟା ଯୁଦ୍ଧକରି ଖସି ଯାଇଛି । ପୁଣି କାଲି ଆସିବ । ରାମ ଲକ୍ଷ୍ମଣଙ୍କ ହାବୁଡ଼ରେ ପଡ଼ିଗଲେ ଆଉ ଫେରି ପାରିବ ନାହିଁ । ରାବଣ ନିଜେ ଥରେ ପରାଜୟ ସ୍ୱୀକାର କରି ଫେରି ଯାଇଛନ୍ତି । ସେ ବି ରାମ ଲକ୍ଷ୍ମଣଙ୍କ ଶର ମୁନରୁ ଞ୍ଚିପାରିବେନାହିଁ । ସୂର୍ପଣଖା କଥାରେ ବାଇ ହୋଇ ଦଶାନନ ଯୋଉ ଭୁଲକଲେ ସେଥିପାଇଁ ଲଙ୍କାରାଜ୍ୟ ଉଚ୍ଛନ୍ନ ହୋଇଗଲା । ଏହା କଣ ଲଙ୍କାପତି ଜାଣିପାରୁ ନାହାନ୍ତି ? ସାମାନ୍ୟ ନାରୀ ଲୋଭରେ ଏତେ ବଡ଼ କ୍ଷତି ସହିବା କ'ଣ ଦରକାର ଥିଲା ?

ସାହାନ୍ତି ଆକାଶରେ ଉଜ୍ଜ୍ୱଳ ଶୁକ୍ରତାରା ଉଇଁ ଆସୁଥିଲେ । ସେ ଯେପରି କହୁଥିଲେ ବଧିଷଣ, ତମେ କ'ଣ ଜାଣିନା, ବିନାଶ ବେଳେ ବିପରୀତ ବୁଦ୍ଧି । ସୀତା ହରଣ ରାବଣ ମରଣ ଏ କଥା ଆନ ହେବ ନାହିଁ ।

ବିଭୀଷଣଙ୍କ ଆଖିରେ ଅଶ୍ରୁ ବିନ୍ଦୁ ଭରିଯାଇଥିଲା । ସେ ହତାଶ ହୋଇ ଉପରକୁ ଚାହିଁ ରହିଥିଲେ । ନିକୁମ୍ଭିଳା ଉପବନରେ ଉଜ୍ଜ୍ୱଳ ହୋମଅଗ୍ନି ଦେଖି ତାଙ୍କର ଭାବାନ୍ତର ଜାତ ହେଲା । ସେ ଜାଣିପାରିଲେ ମେଘନାଦ ବ୍ରହ୍ମାଜୀଙ୍କ ବର କଥା ସ୍ମରଣ କରି ଯଜ୍ଞ ଆରମ୍ଭ କଲାଣି । ହୋମ-ଅଗ୍ନିରୁ ରଥ ବାହାରିଲେ ସେହି ରଥ ଆରୋହଣ କରି ଯୁଦ୍ଧକୁ ଆସିବ । ବ୍ରହ୍ମାଙ୍କ ବର ପ୍ରଭାବରେ ତାକୁ ଆଉ କେହି ଜୟ କରିପାରିବେ ନାହିଁ । ହୁଏତ ରାମଚନ୍ଦ୍ରଙ୍କୁ ପରାଜୟ ସ୍ୱୀକାର କରିବାକୁ ପଡ଼ିବ ; ତାହାହେଲେ ଜାନକୀ ଉଦ୍ଧାର ହୋଇପାରିବ ନାହିଁ । ବିଭୀଷଣଙ୍କ ମନରେ ଦ୍ୱନ୍ଦ୍ୱ ଉପୁଜିଲା । କ'ଣ କରିବେ ? ରାମଚନ୍ଦ୍ରଙ୍କୁ ସାହାଯ୍ୟ କରିବେ ନା ଲଙ୍କାଜୟ କାମନା କରିବେ । ଜାନକୀ ଉଦ୍ଧାର କଥା ଚିନ୍ତାକରି ତାଙ୍କର ହୃଦୟ ବ୍ୟଥିତ ହୋଇଗଲା । ପୁଣି ଆଶ୍ରୟଦାତା ରାମଚନ୍ଦ୍ରଙ୍କ ପରାଜୟ କଥା ଚିନ୍ତାକରି ସେ ବିଚଳିତ ହୋଇ ପଡ଼ିଲେ ।

ମେଘନାଦ ଯଜ୍ଞ ନଷ୍ଟ ନ କଲେ ପରିସ୍ଥିତି ବଦଳି ଯିବ । ସେ ଆଉ ସ୍ଥିର ହୋଇପାରିଲେ ନାହିଁ । ରାମଚନ୍ଦ୍ରଙ୍କୁ ନିଦରୁ ଉଠାଇଲେ । ସୁଗ୍ରୀବ, ହନୁମାନ, ଅଙ୍ଗଦ, ନଳ, ନୀଳ, ସୁଷେଣ ଓ ଜାମ୍ବବ ଆଦି ସେନାପତିଙ୍କୁ ଉଠାଇଲେ । କହିଲେ—ମେଘନାଦ ଯଜ୍ଞ ଆରମ୍ଭ କଲାଣି । ଯଜ୍ଞ ଅନଳରୁ ରଥ ବାହାରିଲେ ଆଉ ତାକୁ ପାରିହେବ ନାହିଁ । ଶୀଘ୍ର ଚାଲ । ତାର ଯଜ୍ଞ ନଷ୍ଟ ନ କଲେ ରକ୍ଷାନାହିଁ ।

ମହାବୀର ଲକ୍ଷ୍ମଣ ଆଗୁଆ ହୋଇ ବାହାରି ପଡ଼ିଲେ । ତାଙ୍କ ପଛେପଛେ ହନୁମାନ୍, ଅଙ୍ଗଦ ଆଦି ବୀର ସେନାପତି-ମାନେ ଚାଲିଲେ । ରାମଚନ୍ଦ୍ର କହିଲେ – ବିଭୀଷଣ ! ମେଘନାଦ ଭାରି ମାୟାବୀ । ତମେ ଲକ୍ଷ୍ମଣ କଡ଼େକଡ଼େ ଲାଗି ରହିବ । ତାର କିଛି ଅନିଷ୍ଟ ଘଟିଲେ ମୁଁ ସହି ପାରିବି ନାହିଁ ।

ଲକ୍ଷ୍ମଣ କହିଲେ—ଭାଇ ! ଭୟ କରନା । ଆଶୀର୍ବାଦ କର । ଆଜ ମୁଁ ସେ ମାୟାବୀ ମେଘନାଦକୁ ଉଚିତ ଶିକ୍ଷାଦେବି ।

ବାନର ସେନା ଓ ସେନାପତିମାନେ ପବନ ବେଗରେ ଦଉଡ଼ିଲେ । ସମୁଦ୍ରରୁ ବାଲି ଓ ପାଣିନେଇ ମେଘନାଦର ଯଜ୍ଞ-କୁଣ୍ଡରେ ଅଜାଡ଼ ଦେଲେ । ଟେକା ପଥର ଜମା କରିଦେଲେ । ଯଜ୍ଞ ଉପକରଣ ଏଣେ ତେଣେ ଫୋପାଡ଼ି ଦେଲେ । ଭୋଗରାଗ ସାମଗ୍ରୀ ଖାଇଗଲେ ।

ଯଜ୍ଞ କୁଣ୍ଡର ଅଗ୍ନି ଲିଭିଗଲା । ମେଘନାଦ ପୂର୍ଣ୍ଣାହୁତି ଦେଇ-ପାରିଲା ନାହିଁ । ଚିନ୍ତାକଲା, ଏ ଗୋପମାୟ ଯଜ୍ଞ କଥା ମାଙ୍କଡ଼ ଦଳ ଜାଣିଲେ କେମିତି ? ଆଗରେ ବିଭୀଷଣଙ୍କୁ ଦେଖି ସବୁ ରହସ୍ୟ ବୁଝିପାରିଲା । କହିଲା—କକା, ଶେଷରେ ଏଇଆ କଲ ! ମୋର ମୃତ୍ୟୁଭେଦ ଶତ୍ରୁଙ୍କୁ ଜଣାଇଦେଲ । ତଥାପି ମୁଁ କାହାରିକୁ ଭୟ କରେନା । ଦେବରାଜ ଇନ୍ଦ୍ରଙ୍କୁ ଜୟକରି ଇନ୍ଦ୍ରଜିତ ପଦ ପାଇଛି । ଏ ନରବାନରଙ୍କୁ ଭୟକରି ଶରଣ ପଶିବି ?

ଏହାକହି ଇନ୍ଦ୍ରଜିତ ଘୋର ଯୁଦ୍ଧକଲା । ହନୁମାନ, ଅଙ୍ଗଦ, ନଳ, ନୀଳ, ସୁଷେଣ ଆଦି ସେନାପତିମାନେ ମେଘନାଦକୁ

ସ୍ୱରପଟରୁ ଆକ୍ରମଣ କଲେ । ମହାବୀର ଲକ୍ଷ୍ମଣ ବଜ୍ରବାଣ ଛାଡ଼ି ମାରି ମେଘନାଦକୁ କ୍ଷତବିକ୍ଷତ କରିଦେଲେ । ମେଘନାଦ ମାୟାଯୁଦ୍ଧ ରଚନା କରିବା ପାଇଁ ଆକାଶକୁ ଉଠି ଯାଉଥିଲା । ଏହି ସମୟରେ ମହାବୀର ଲକ୍ଷ୍ମଣ ଏକ ଶକ୍ତିଶାଳୀ ଶର ମେଘନାଦର ଗ୍ରୀବାକୁ ଲକ୍ଷ୍ୟ କରି ସନ୍ଧାନ କଲେ । ଶର ଆଘାତରେ ଘୋର ଗର୍ଜନ କରି ମେଘନାଦ ମରିଗଲା ।

ଲକ୍ଷ୍ମଣ ମନଆନନ୍ଦରେ ସୁବେଳ ପର୍ବତକୁ ଫେରି ଆସିଲେ । ରାମଚନ୍ଦ୍ର, ଲକ୍ଷ୍ମଣଙ୍କୁ ଆଲିଙ୍ଗନ କରି କହିଲେ — ଲକ୍ଷ୍ମଣ ! ତୁ ଆଜି ଇନ୍ଦ୍ରଜିତକୁ ମାରି ଜାନକୀ ଉଦ୍ଧାର ପଥ ପରିଷ୍କାର କରିଦେଲୁ । ତୋ ଋଣ ମୁଁ ଶୁଝି ପାରିବି ନାହିଁ ।

ମେଘନାଦ ବଧ କଥା ଶୁଣି ରାବଣ କାନ୍ଦିପକାଇଲା । କହିଲା- ହାୟରେ ମେଘନାଦ, ସ୍ୱର୍ଗରେ ଯୁଦ୍ଧ କରି ଦେବରାଜ ଇନ୍ଦ୍ରକୁ ଜୟ କରିଥିଲୁ । ଆଜି ସାମାନ୍ୟ ମାନବ ଲକ୍ଷ୍ମଣ ହାତରେ ଜୀବନ ଦେଲୁ । ଅବିଶ୍ୱାସୀ ବିଭୀଷଣ, ମେଘନାଦ ପ୍ରତି ତୋର ଟିକେ ଦୟାମାୟା ହେଲାନାହିଁ । କପଟ ଯୁଦ୍ଧର ଆୟୋଜନ କରି ପୁଅଟାକୁ ମରାଇ ଦେଲୁ । ଆଜିପର୍ଯ୍ୟନ୍ତ ମୁଁ ନୀରବ ରହିଥିଲି । ତୋ ଉପରକୁ ସାମାନ୍ୟ ଶରଟିଏ ଛାଡ଼ି ନ ଥିଲି ; କିନ୍ତୁ ଆଜି ତୋର ନିସ୍ତାର ନାହିଁ । ଆଜି ଯୁଦ୍ଧରେ ଆଗେ ତୋତେ ବଧ କରିବି ।

ପୁତ୍ର ଶୋକରେ ଅଧୀର ହୋଇ ରାବଣ ଯୁଦ୍ଧକୁ ବାହାରିଲା । ଯୁଦ୍ଧକ୍ଷେତ୍ରରେ ଆଉ କାହାରି ଆଡ଼କୁ ଲକ୍ଷ୍ୟ ନ କରି ଖୋଜିଲା

ବିଭୀଷଣଙ୍କୁ । ବିଭୀଷଣ ବାନର ସେନାଙ୍କ ମଧ୍ୟରେ ଛିଡ଼ା ହୋଇଥିଲେ । ରାବଣ ବିଭୀଷଣ ଆଗରେ ରଥ ଛିଡ଼ାକରି ଦେଲା । ରାଗରେ ଦଯ୍ୟାମାୟା ଭୁଲି ବିଭୀଷଣଙ୍କ ଉପରକୁ ଏକ ଶକ୍ତିଶାଳୀ 'ଶକ୍ତି' ପ୍ରୟୋଗ କଲା ।

ଅଳ୍ପଦୂରରେ ଠିଆ ହୋଇଥିଲେ ଲକ୍ଷ୍ମଣ । ରାବଣ ଶକ୍ତି ଆଘାତରେ ବିଭୀଷଣ ଟଳି ପଡ଼ଥାନ୍ତେ ; କିନ୍ତୁ ଲକ୍ଷ୍ମଣ ବିଭୀଷଣଙ୍କ ପାଖକୁ ଛୁଟିଆସି ରାବଣର ଶକ୍ତିଟିକୁ ଦିବ୍ୟାସ୍ତ୍ର ସନ୍ଧାନ କରି କାଟିପକାଇଲେ । ଅବ୍ୟର୍ଥ ଶକ୍ତିଟା କଟିଯିବା ଦେଖି ରାବଣ ରାଗିଗଲା । କହିଲା ଲକ୍ଷ୍ମଣ ! ବୀରପଣ ଦେଖାଇ ବିଭୀଷଣର ପ୍ରାଣ ରକ୍ଷାକଲୁ ; କିନ୍ତୁ ରାବଣ ହାତରୁ ଆଜି ନିଜପ୍ରାଣ ରକ୍ଷାକରି ପାରିବୁ ନାହିଁ । ବଡ଼ଭାଇ ରାମକୁ ଡାକ । ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନିପୁରରେ ଯେତେ ବୀର ଅଛନ୍ତି, ସମସ୍ତେ ଏକ ହେଲେ ବି ତୋତେ କେହି ରକ୍ଷାକରି ପାରିବେ ନାହିଁ । ଆଜି ଯୁଦ୍ଧରେ ତୋତେ ବଧ କରି ପୁତ୍ରହତ୍ୟାର ପ୍ରତିଶୋଧ ନେବି ।

ଏହାକହି ମହାବୀର ରାବଣ ତୂଣୀର ଭିତରୁ 'ଏକଘ୍ନୀ ଶକ୍ତି' ବାହାର କଲା । ଏକାନ୍ତ ନିର୍ମମ ଭାବରେ ଲକ୍ଷ୍ମଣଙ୍କ ଛାତିକୁ ଲକ୍ଷ୍ୟ କରି ଶକ୍ତି ସନ୍ଧାନ କଲା । ଶକ୍ତିର ପ୍ରଖର ତେଜରେ ଯୁଦ୍ଧ ଭୂମି ଆଲୋକିତ ହୋଇଗଲା । ପ୍ରତିଅସ୍ତ୍ର ସନ୍ଧାନ କରି ରାମଚନ୍ଦ୍ର ଶକ୍ତିର ଗତି ରୁଦ୍ଧକରି ପାରିଲେ ନାହିଁ । ହନୁମାନ, ଅଙ୍ଗଦ ଆଦି ବୀରମାନେ ବହୁ ଚେଷ୍ଟା କରି ଶକ୍ତିର ବଳ ନଷ୍ଟ କରିପାରିଲେ ନାହିଁ । ନିଜେ ବହୁଶର ସନ୍ଧାନ

କରି ବୀର ଲକ୍ଷ୍ମଣ ଦୃଢ଼ ଶକ୍ତିର ଗତିରୁଦ୍ଧ କରିପାରିଲେ ନାହିଁ । ମହାଭୟଙ୍କର "ଏକଘ୍ନୀ ଶକ୍ତି" ଲକ୍ଷ୍ମଣଙ୍କ ଗ୍ଛାତିରେ ଫୁଟିଗଲା । ମହାବୀର ଲକ୍ଷ୍ମଣ ଅଜ୍ଞାନ ହୋଇ ତଳେ ପଡ଼ି-ଗଲେ । ଜୟଶଙ୍ଖ ବଜାଇ ଦଶାନନ ଲଙ୍କାଗଡ଼କୁ ଫେରିଗଲା ।

ଲକ୍ଷ୍ମଣ ଅବସ୍ଥା ଦେଖି ବାନରମାନେ କାନ୍ଦିଉଠିଲେ । ରାମଚନ୍ଦ୍ର ଲକ୍ଷ୍ମଣ ଲକ୍ଷ୍ମଣ କହି ଗମ୍ଭୀର ଶୋକ କଲେ । ଯୁଦ୍ଧ କ୍ଷେତ୍ରଟି କ୍ରନ୍ଦନ ଧ୍ୱନିରେ ପୂରିଗଲା ।

ରାମଚନ୍ଦ୍ରଙ୍କ ବଶୀଭୂତବାନ୍ଧବମାନରେ ବୈଦ୍ୟରାଜ ସୁଷେଣ ରହିଥିଲେ । ସେ ଘଟଣାସ୍ଥଳକୁ ଦୌଡ଼ି ଆସିଲେ । ଲକ୍ଷ୍ମଣଙ୍କ ନାଡ଼ୀ ପରୀକ୍ଷା କରି କହିଲେ—ପ୍ରଭୁ, ରାମଚନ୍ଦ୍ର ଦୁଃଖ କରନ୍ତୁ ନାହିଁ । ଶକ୍ତି ଆଘାତରେ ଲକ୍ଷ୍ମଣ ଅଜ୍ଞାନ ହୋଇ ଯାଇଛନ୍ତି । ମରି ନାହାନ୍ତି । ହିମାଳୟ ପର୍ବତର ଚନ୍ଦ୍ରଗିରି ଓ ଦ୍ରୋଣଗିରି ଶୃଙ୍ଗରେ ବିଶଲ୍ୟକରଣୀ ଅଛି । ସେହି ବିଶଲ୍ୟକରଣୀ ଯଦି ଆଜି ରାତିକ ଭିତରେ ଅଣାଇ ପାରିଲେ ମୁଁ ଲକ୍ଷ୍ମଣଙ୍କୁ ଭଲ କରିଦେବି ।

ବୈଦ୍ୟରାଜ ସୁଷେଣଙ୍କ କଥା ଶୁଣି ମହାବୀର ହନୁମାନ ହିମାଳୟ ଯାତ୍ରା କଲେ । ଚନ୍ଦ୍ରଗିରି, ଦ୍ରୋଣଗିରି ଶୃଙ୍ଗ ଭାଙ୍ଗି ମୁଣ୍ଡରେ ଲଦି ପାହାନ୍ତା ପହରକୁ ଫେରିଆସିଲେ । ସୁଷେଣ ଔଷଧ ପ୍ରସ୍ତୁତ କରି ଘା' ମୁହଁରେ ଦେଲେ ଓ ଲକ୍ଷ୍ମଣଙ୍କ ନାକରେ ନାସ ପକାଇଲେ । ଔଷଧ ପ୍ରଭାବରେ ଲକ୍ଷ୍ମଣ ଚେତା ପାଇ ଉଠିଲେ । ରାମଚନ୍ଦ୍ର ଲକ୍ଷ୍ମଣଙ୍କୁ ଆଲିଙ୍ଗନ

କରି ସବୁ ଦୁଃଖ ଭୁଲିଗଲେ । ବାନରମାନେ ହନୁମାନଙ୍କୁ ପ୍ରଶଂସା କଲେ । ଆନନ୍ଦରେ ଜୟଧ୍ୱନି କରି ସୁବେଳ ପର୍ବତକୁ ଫେରିଗଲେ ।

ରାତି ପାହିଲାମାତ୍ରେ ବାନରସେନା ଲଙ୍କା ଗଡ଼ଦ୍ୱାରରେ ଜୁଣ୍ଡହୋଇ ହୁଙ୍କାର ଛାଡ଼ିଲେ । ରାବଣ ନିଜର ଅବ-ଶିଷ୍ଟ ସୈନ୍ୟସେନା ସହିତ ଯୁଦ୍ଧ କରିବାକୁ ବାହାରି ଆସିଲା । ପୁଷ୍ପକ ବିମାନରେ ବସି ଶ୍ରାବଣ ମାସର ଜଳଧାରପରି ଶର ବୃଷ୍ଟି କଲା । ରାବଣର ତୀକ୍ଷ୍ଣ ଶରର ଆଘାତରେ ବାନର-ମାନେ ଅସ୍ଥିର ହୋଇ ପଡ଼ିଲେ । ପଛଘୁଞ୍ଚା ଦେଇ ରାମ ଲକ୍ଷ୍ମଣଙ୍କ ପାଖରେ ପହଞ୍ଚିଲେ । ଲକ୍ଷ୍ମଣ ନିଜ ଦଳର ଦୁର୍ବଳତା ଲକ୍ଷ୍ୟ କରି ଧନୁଶର ଧରି ରାବଣ ସହିତ ଯୁଦ୍ଧ ଆରମ୍ଭ କଲେ ।

ରାବଣ ଲକ୍ଷ୍ମଣଙ୍କ ସହିତ କିଛି ସମୟ ଯୁଦ୍ଧ କରି ଆଗକୁ ରଥ ବାହିନେଲା । ରାମଚନ୍ଦ୍ରଙ୍କ ଆଗରେ ରଥ ଠିଆକରି କହିଲା—ରାମଚନ୍ଦ୍ର, ଆଜି ମୋର ଶେଷ ଯୁଦ୍ଧ । ହୁଏତ ଆଜି ଧରା ପୃଷ୍ଠରୁ ରାମ ବିଦାୟ ନେବେ ନ ହେଲେ ରାବଣ ବିଦାୟ ନେବ । ଏଥର ଇଷ୍ଟ ଚିନ୍ତାକରି ରାବଣ ସହିତ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୁଅ ।

ରାମଚନ୍ଦ୍ର କହିଲେ—ରାବଣ, ଉଚ୍ଚ ବଂଶରେ ତମର ଜନ୍ମ କିନ୍ତୁ ତୁମର କର୍ମ ଅତି ନୀଚ । ପଞ୍ଚବଟୀରୁ ସୀତା ଚୋରି କରି ରାଜଧର୍ମରେ ଚରମ କଳଙ୍କ ବୋଳିଛ । ଆଉ ତମକୁ ରକ୍ଷାନାହିଁ । ମରିବାକୁ ପ୍ରସ୍ତୁତ ହୋଇଯାଅ । ଏହା କହି ରାମଚନ୍ଦ୍ର ରାବଣକୁ

ଲକ୍ଷ୍ୟ କରି ତୀକ୍ଷ୍ଣଶର ସନ୍ଧାନ କଲେ । ରାବଣ ମଧ୍ୟ ରାମଚନ୍ଦ୍ରଙ୍କୁ ଲକ୍ଷ୍ୟ କରି ଶରବୃଷ୍ଟି କଲା । ବହୁସମୟ ଧରି ରାମରାବଣ ଯୁଦ୍ଧ ଚାଲିଲା । ଶେଷରେ ମହାବୀର ରାମଚନ୍ଦ୍ର ବ୍ରହ୍ମଶର ସନ୍ଧାନ କରି, ରାବଣର ଦଶମୁଣ୍ଡ କାଟି ପକାଇଲେ ! ମହାଭୟଙ୍କର ଗର୍ଜ୍ଜନ କରି ରାବଣ ମରିଗଲା ।

ବାନରମାନେ 'ଜୟ ରାମଚନ୍ଦ୍ର ଙ୍କ ଜୟ' କହି ଆନନ୍ଦରେ ନୃତ୍ୟ କଲେ । ରାବଣର ମୃତ୍ୟୁ ଦେଖି ବିଭୀଷଣ କାନ୍ଦି ପକାଇଲେ । ରାମଚନ୍ଦ୍ର ବିଭୀଷଣଙ୍କୁ ସାନ୍ତ୍ୱନା ଦେଇ କହିଲେ—ରାବଣ ବୀର ପରି ସମ୍ମୁଖ ସଂଗ୍ରାମ କରି ମରିଛି । ତା'ପାଇଁ ଦୁଃଖ କରନା । ସେ ଥିଲା ଲଙ୍କାରାଜ୍ୟର ରାଜା । ରାଜକୀୟ ରୀତିରେ ତାର ଶବ ସଂସ୍କାର କର । ବିଭୀଷଣ ମନ୍ଦୋଦରୀ ଆଦି ପୁରନାରୀମାନଙ୍କୁ ବୋଧଶୋଧ କରି ରାବଣର ଶବ ସଂସ୍କାର କଲେ । ତା'ପରେ ଶୁଭଦିନ ଦେଖି ରାମଚନ୍ଦ୍ର ବିଭୀଷଣଙ୍କୁ ଲଙ୍କାରେ ରାଜା କଲେ ।

ମହାବୀର ଲକ୍ଷ୍ମଣ ରାମଚନ୍ଦ୍ରଙ୍କ ଆଗରେ ହାତଯୋଡ଼ି ଜଣାଇଲେ—ଭାଇ ! ଏଥର ଅଶୋକ ବନରୁ ସୀତାଠାକୁରାଣୀଙ୍କୁ ଅଣାଇବାର ବ୍ୟବସ୍ଥା କର । ରାମଚନ୍ଦ୍ରଙ୍କ ଅନୁମତିକ୍ରମେ ରାମଭକ୍ତ ହନୁମାନ ଅଶୋକ ବନକୁ ଯାଇ ସୀତାଦେବୀଙ୍କୁ ଯୁଦ୍ଧ ସମାଚାର ଜଣାଇଲେ । ରାମଚନ୍ଦ୍ରଙ୍କ ବିଜୟବାର୍ତ୍ତା ପାଇ ସୀତାଦେବୀ ସ୍ୱାମୀଦେବତାଙ୍କୁ ଦର୍ଶନ କରିବା ପାଇଁ ପାଦ-ଗତିରେ ସୁବେଳ ପର୍ବତକୁ ବିଜେକଲେ । ସୀତାଦେବୀଙ୍କ ଆଗମନ ଦେଖି ବାନରମାନେ ଆନନ୍ଦରେ ଜୟଧ୍ୱନି କଲେ ।

ସୀତା ରାମଚନ୍ଦ୍ରଙ୍କ ପାଦରେ ମୁଣ୍ଡ ଲଗାଇ ପ୍ରଣାମ କଲେ । କିନ୍ତୁ ରାମଚନ୍ଦ୍ର ତାଙ୍କୁ ପଦେ କଥା କହିଲେ ନାହିଁ । କିଛି ସମୟ ମୀରବରେ ବିତିଗଲା । ଲକ୍ଷ୍ମଣ ଆଉ ସମ୍ଭାଳି ହୋଇ ପାରିଲେ ନାହିଁ । କହିଲେ—ଭାଇ, ଯୋଉ ଜାନକୀଙ୍କ ପାଇଁ ବଣସାରା ବୁଲି କ୍ରନ୍ଦନ କରୁଥିଲ ତାଙ୍କୁ ଆଜି ପଦେ କଥା କହିବାକୁ କୁଣ୍ଠାବୋଧ କରୁଛନ୍ତ କାହିଁକି ? ସୀତାଦେବୀଙ୍କୁ ଏପରି ଅପମାନିତ କରିବା ଉଚିତ ନୁହେଁ । ତାଙ୍କର ଏ ଅପମାନ ମୁଁ ସହି ପାରୁନାହିଁ ।

ରାମଚନ୍ଦ୍ର ଗମ୍ଭୀର ହୋଇ କହିଲେ—ଲକ୍ଷ୍ମଣ, ଜାନକୀ ବହୁଦିନ ଧରି ରାକ୍ଷସପୁରୀରେ ରହିଛନ୍ତି । ତାଙ୍କ ସତୀତ୍ୱର ପରିଚୟ ନ ପାଇ ମୁଁ ତାଙ୍କୁ ଗ୍ରହଣ କରିପାରିବି ନାହିଁ ।

ରାମଚନ୍ଦ୍ରଙ୍କ କଥା ଶୁଣି ସୀତାଦେବୀ କାନ୍ଦି ପକାଇଲେ । ଟିକେ ପରେ କହିଲେ—ଲକ୍ଷ୍ମଣ, ଶୀଘ୍ର ଚିତାନଳ ପ୍ରସ୍ତୁତ କର । ମୁଁ ଅଗ୍ନିପରୀକ୍ଷା ଦେଇ ମୋର ସତୀତ୍ୱର ପ୍ରମାଣ ଦେବାକୁ ଚାହେଁ । ଲକ୍ଷ୍ମଣ ଚିତାଅଗ୍ନି ପ୍ରସ୍ତୁତ କଲେ । ସୀତା ଦଶଦିଗପାଳ ସାକ୍ଷୀ ରଖି ନିଆଁ ଭିତରକୁ ଡେଇଁପଡ଼ିଲେ । ସୀତାଙ୍କ ସତୀତ୍ୱ ତେଜ ପାଖରେ ଅଗ୍ନି ତେଜ ନିଷ୍ପ୍ରଭ ଜଣାପଡ଼ିଲା । ସୀତା ଯେ ପରମାସତୀ ଏ କଥା ପ୍ରମାଣ ହୋଇଗଲା । ରାମଚନ୍ଦ୍ରଙ୍କର ସମସ୍ତ ସନ୍ଦେହ ଦୂର ହୋଇଗଲା । ସେ ସୀତାଙ୍କ ହାତଧରି ଟାଣି ନେଇଗଲେ । ଆଦର କରି ପାଖରେ ବସାଇଲେ ।

ରାମ, ସୀତାଙ୍କ ମିଳନ ଦେଖି ବାନରମାନେ ଆନନ୍ଦ ଅନୁଭବ କଲେ । ରାମ, ସୀତାଙ୍କର ଜୟଗାନ କଲେ । ଲକ୍ଷ୍ମଣ ସମସ୍ତଙ୍କ ଠାରୁ ବେଶି ଆନନ୍ଦ ଲାଭ କରୁଥିଲେ । କହିଲେ—ଭାଉଜ, ଭାଇଙ୍କ

କଥା ଶୁଣି ମନେମନେ ହସି ଯାଇଥିବ ; କିନ୍ତୁ ଅସଲ କଥାଟା ଏବେ ବୁଝିପାରିବଣି । ତମର ଚରିତ୍ର ଉପରେ ଭାଇଙ୍କର ଟିକେ ହେଲେ ସନ୍ଦେହ ନ ଥିଲା । କେବଳ ଜଗତଜନଙ୍କ ଆଖିରେ ତମର ସତୀତ୍ୱ ପ୍ରମାଣ କରିଦେବାକୁ ସେ ବଢ଼ିଆ କୌଶଳଟିଏ ଉଦ୍ଭାବନ କରିଦେଲେ । ଜଗତ ଜାଣିଲା ସୀତା ପରମାସତୀ । ତମ ମନରେ ଥରକ ପାଇଁ ଭିନ୍ନ ଭାବ ଆସିଥିଲେ ତମେ ନିଷ୍ଟୁର ଚିତାନଳରେ ପୋଡ଼ି ଯାଇଥାନ୍ତ । ତମେ ରାକ୍ଷସପୁରୀରେ ରହି ମଧ୍ୟ ରାମଚନ୍ଦ୍ରଙ୍କ ପାଦପଦ୍ମରେ ଲୟ ରଖିଥିବାରୁ ଆଜି ଅଗ୍ନି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲ । ତମ ସତୀତ୍ୱର ମହିମା ସମସ୍ତେ ଜାଣି-ପାରିଲେ । ତମକୁ ନାରୀ ସମାଜରେ ଉଚ୍ଚସ୍ଥାନ ଦେବାକୁ ଭାଇ ଯୋଉ ଉପାୟ ଅବଲମ୍ବନ କଲେ ବାସ୍ତବରେ ତାର ପଟାନ୍ତର ନାହିଁ ।

ଲଙ୍କପତି ବିଭୀଷଣ ରାମଚନ୍ଦ୍ରଙ୍କ ପାଖରେ ହାତଯୋଡ଼ି ଜଣାଇଲେ—ପ୍ରଭୁ ରାମଚନ୍ଦ୍ର, ଲଙ୍କାପୁରୀରେ କିଛିଦିନ ଅବସ୍ଥାନ କରନ୍ତୁ । ଆପଣଙ୍କ ସେବା କରିବା ପାଇଁ ଲଙ୍କାର ନରନାରୀମାନେ ରହିଁ ବସିଛନ୍ତି ।

ରାମଚନ୍ଦ୍ର କହିଲେ—ଲଙ୍କପତି, ଚୌଦବର୍ଷ ପୂରିଗଲାଣି । ଭରତ ମୋ ପଥ ଚାହିଁ ବସିଥିବ । ଡେରିକଲେ ସେ ଭାରି ମନ ଦୁଃଖ କରିବ । ଆଉ ମୁଁ ଏଠାରେ ରହିପାରିବି ନାହିଁ । ଖୁସି ମନରେ ଆମକୁ ବିଦାୟ ଦିଅ ।

ଏହାପରେ ରାମଚନ୍ଦ୍ର ବାନରସେନା ଓ ସେନାପତିମାନଙ୍କୁ ପାଖକୁ ଡାକିଲେ । କହିଲେ – ତମ ଉପକାର ମୁଁ ଶୁଝି ପାରିବି

ନାହିଁ । ତମେ ସବୁ ସହଯୋଗ କରି ନ ଥିଲେ ମୁଁ ଜାନକୀ ଉଦ୍ଧାର କରିପାରି ନ ଥାନ୍ତି । ତମରି ସାହାଯ୍ୟ ସହାନୁଭୂତିରେ ମୋର ଲକ୍ଷ୍ୟ ପୂରଣ ହେଲା । ଏଥର ତମେମାନେ ନିଜନିଜ ପୁରକୁ ଫେରି ଯାଅ ।

ବାନରମାନେ ରାମ, ସୀତାଙ୍କୁ ପ୍ରଣାମ ଜଣାଇଲେ । ବିଦାୟ ନେଇ ନିଜନିଜ ରାଜ୍ୟକୁ ବାହୁଡ଼ିଗଲେ ।

ଏହାପରେ ରାମଚନ୍ଦ୍ର ସୁଗ୍ରୀବଙ୍କୁ ଅତି ଆଦର କରି ଆଲିଙ୍ଗନ କଲେ । କହିଲେ—ସଖା, ତମ ଭରସା ପାଇ ନ ଥିଲେ ମୁଁ ସୀତାଠାବ କରିପାରି ନ ଥା'ନ୍ତି । ମୁଁ ତମକୁ ଯେତିକି ସାହାଯ୍ୟ କରିଥିଲି ତାର ବହୁଗୁଣରେ ସାହାଯ୍ୟ ପାଇଲି । ତମର ଉପକାର ଶୁଝି ହେବ ନାହିଁ । ଏଥର ଖୁସିମନରେ କିଷ୍କିନ୍ଧାକୁ ଫେରି ଯାଅ ।

ଲକ୍ଷ୍ମଣ ବସିଥିଲେ । ଉଠିପଡ଼ି କହିଲେ — ଭାଇ, ବାନରରାଜ ସୁଗ୍ରୀବଙ୍କୁ ମୁଁ ଛାଡ଼ିବି ନାହିଁ । ସେ ଆମ ସାଙ୍ଗରେ ଅଯୋଧ୍ୟା ଯିବେ । ପୁଣି ସୁଗ୍ରୀବଙ୍କ ହାତ ଧରିପକେଇ କହିଲେ—ବାନର-ରାଜ, ତମକୁ କିଷ୍କିନ୍ଧା କଟକରେ ଭାଇ ରାଜା କରାଇଥିଲେ । ତମେ ଭାଇଙ୍କୁ ଅଯୋଧ୍ୟାରେ ରାଜା ନ କରି ଘରକୁ ଫେରିବ କିପରି ? ତମକୁ 'ରାମ ଅଭିଷେକ' ନିମନ୍ତ୍ରଣ ରହିଲା । ଅଯୋଧ୍ୟାରେ ଅଭିଷେକ ଉତ୍ସବ ସରାଇ ତା'ପରେ କିଷ୍କିନ୍ଧା ଫେରି ଯିବ ।

ରାମଚନ୍ଦ୍ରଙ୍କ ପାଦ ତଳକୁ ବସିଥିଲେ ମହାବୀର ହନୁମାନ । ଲକ୍ଷ୍ମଣ ତାଙ୍କ ମୁଣ୍ଡରେ ହାତ ଆଉଁଷି କହିଲେ—ବୀରବର, ତମେ କୁଆଡ଼େ ଯିବ ? ଅଞ୍ଜନା ମାଆଙ୍କ ପରିବର୍ତ୍ତେ ତମେ ତ ଆଉଜଣେ

ମାଆଙ୍କୁ ପାଇଗଲଣି । ଯୋଉ ମାଆକୁ ସାଗର ଲଙ୍ଘି ଠାବ କଲ ଆଉ ଘୋର ଯୁଦ୍ଧ କରି ଉଦ୍ଧାର କଲ ତାଙ୍କୁ ଛାଡ଼ି ତମେ ଆଉ କୁଆଡ଼େ ଯାଇପାରିବ ନାହିଁ । ତମେ ସବୁଦିନ ପାଇଁ ସେଇ ସୀତାଦେବୀଙ୍କ ପାଖରେ ରହିବ । ତମେ ନ ରହିଲେ ରାମନାମର ମହିମା ଗାନ କରିବ କିଏ ?

ଏହାପରେ ମହାବୀର ଲକ୍ଷ୍ମଣ ବିଭୀଷଣଙ୍କୁ ଚାହିଁଲେ । କହିଲେ- ଲଙ୍କାପତି, ତମେ ଆମ ଆଶ୍ରୟ ନେଇଥିଲ ସତ, କିନ୍ତୁ ତମେ ଆମର ଯେତେ ଉପକାର କରିଛ ତାହା ସହଜରେ କହି ହେବନାହିଁ । ତମେ ସାହାଯ୍ୟ କରି ନ ଥିଲେ ଇନ୍ଦ୍ରଜିତ ମରି ନ ଥା'ନ୍ତା । ଇନ୍ଦ୍ରଜିତ ମରି ନ ଥିଲେ ଆମେ ରାବଣକୁ ଜୟ କରିପାରି ନ ଥା'ନ୍ତୁ । ତେଣୁ ସୀତା ଉଦ୍ଧାର ପାଇଁ ତମର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ । ତମ ଉପକାର ଶୁଝିହେବ ନାହିଁ ।

ତମ ସ୍ତ୍ରୀ ସୁରମା ଓ ଝିଅ ତ୍ରିଜଟା ଅଶୋକବନରେ ସୀତାଦେବୀଙ୍କର ବହୁତ ଉପକାର କରିଛନ୍ତି । ତାଙ୍କୁ ମୁଁ ଧନ୍ୟବାଦ ଜଣାଉଛି । ତମ ପରି ଉପକାରୀ ବନ୍ଧୁଙ୍କୁ ଛାଡ଼ିଯିବାକୁ ଆମର ମନ ବଳୁ ନାହିଁ ; କିନ୍ତୁ ଅଯୋଧ୍ୟା ନ ଗଲେ ନ ଚଳେ । ଭରତ ଭାଇ ଓ ମାଆମାନେ ଭାଇଙ୍କ ପଥ ଚାହିଁ ବସିଥିବେ । ହଁ, ଭାଇ ଅଯୋଧ୍ୟାରେ ପହଞ୍ଚିଲେ ତାଙ୍କ ଅଭିଷେକ ଉତ୍ସବ ଆରମ୍ଭ ହେବ । ସେହି ଅଭିଷେକ ଉତ୍ସବରେ ତମେ ନିଶ୍ଚୟ ଯୋଗଦେବ । ସେଥିପାଇଁ ତମକୁ ନିମନ୍ତ୍ରଣ ରହିଲା । ଆମ ସାଙ୍ଗରେ ଅଯୋଧ୍ୟା ଯିବାକୁ ପ୍ରସ୍ତୁତ ହୁଅନ୍ତୁ ।

ଟିକେ ପରେ ପୁଣି ଲକ୍ଷ୍ମଣ କହିଲେ—ଲଙ୍କାପତି, ଅଯୋଧ୍ୟା ଏଠିକି ବହୁଦୂର । ଚାଲିଚାଲି ଗଲେ ବହୁଦିନ ଲାଗିବ । ତେବେ ଯଦି ପୁଷ୍ପକ ବିମାନ ବାହାର କରି ଆମକୁ ସେଥିରେ ବସାଇ ନେଇ ପାରନ୍ତ ତା ହେଲେ ଆମେ ଅଳ୍ପ ଦିନରେ ଅଯୋଧ୍ୟାରେ ପହଞ୍ଚି ପାରନ୍ତୁ ।

ବିଭୀଷଣ ଲକ୍ଷ୍ମଣଙ୍କ କଥା ଶୁଣି ଅତିଶୟ ଖୁସି ହୋଇଗଲେ । କହିଲେ—ବୀରବର, ମୁଁ ଆପଣଙ୍କ ସେବା କରିବାକୁ ପ୍ରସ୍ତୁତ ଅଛି । ପ୍ରଭୁ ରାମଚନ୍ଦ୍ରଙ୍କ ଦୟାରୁ ମୁଁ ଲଙ୍କା ସିଂହାସନ ଲାଭ କରିଛି । ତାଙ୍କ ସେବାରେ ପୁଷ୍ପକବିମାନ ବିନିଯୋଗ କରିବାକୁ ମୋର କିଛି ଆପତ୍ତି ନାହିଁ । ଏହା କହି ବିଭୀଷଣ ଲଙ୍କା କଟକକୁ ଚାଲିଗଲେ । ମୁହୂର୍ତ୍ତକ ମଧ୍ୟରେ ପୁଷ୍ପକ ବିମାନ ଧରି ବାହାରି ଆସିଲେ ।

ସୁସଜ୍ଜିତ ପୁଷ୍ପକ ବିମାନରେ ରାମ, ଲକ୍ଷ୍ମଣ ଓ ସୀତା ବିଜେ କଲେ । ସୁଗ୍ରୀବ ଓ ହନୁମାନ ଯଥାସ୍ଥାନରେ ବସିଲେ । ବିଭୀଷଣ ଅଯୋଧ୍ୟା ଅଭିମୁଖରେ ପୁଷ୍ପକ ଯାନ ଚଳାଇଲେ ।

ଲକ୍ଷ୍ମଣ ହସିହସି କହୁଥିଲେ—ଭାଉଜ, ମୋ କଥା ମନେ ଅଛି ନା ? ଭାଇଙ୍କ ସେବା ଆଉ ତମ ହାତ ପରଷାରୁ ମତେ ବଞ୍ଚିତ କରିବ ନାହିଁ ।

—□—